ପ୍ରକାଶକ—
ପଣ୍ଡିତ ମାୟାଧର ଦାଶ, କାବ୍ୟତୀର୍ଥ
ଛାତ୍ରବନ୍ଧୁ ପୁସ୍ତକାଳୟ
କଟକ—୨

ପ୍ରଥମ ପ୍ରକାଶ—ଏକ ସହସ୍ର
୧୯୫୦

ମୁଦ୍ରାକର—
ପଣ୍ଡିତ ଭୁବନେଶ୍ୱର ମିଶ୍ର
କୃଷକ ପ୍ରେସ, କଟକ—୧

ଟଙ୍କାଟିଏ

# ସୂଚୀପତ୍ର

ବିଷୟ ପୃଷ୍ଠାଙ୍କ





# ଚନ୍ଦ୍ରିକା

ଚନ୍ଦ୍ରିକା !
ଯେବେ ବିଳସିଲ ମଧୁ ଲଗନେ;
କଣ୍ଠେ କଣ୍ଠେ ଅଭିନନ୍ଦନ ଉଚ୍ଛୁଳିଲା ସାରା ଭୁବନେ
ଶଙ୍ଖେ ଶଙ୍ଖେ ଜୟ ସଙ୍ଗୀତ ଘୋଷିଗଲା ପର ଭବନେ,
ଉଜ୍ଜ୍ୱଳ-କର ହସିଲ, ରସିଲ, କଜ୍ଜଳ-ଘନ ଗଗନେ ।

[ ୨ ]

ଚନ୍ଦ୍ରିକା !
ଯେବେ ରଖିଥିଲ କରି ବନ୍ଦୀ,
ରକ୍ଷ-ପୁରୀର ରକ୍ତ-ଶୋଷକ ଫାନ୍ଦ ବିବିଧ ଫନ୍ଦୀ,
(ତୁମେ) ଗୁନ୍ଥିଲ ବସି ସତ୍ୟ-ସୁମନ ଅଂହିସ ଡୋରେ ଛନ୍ଦ,
ମନ୍ଦ୍ରେ ଗାଇଲ ଶାନ୍ତି ମନ୍ତ୍ର ଶାଶ୍ବତ ପଦ ବନ୍ଦ ।

[ ୩ ]

ଚନ୍ଦ୍ରିକା !

ଯେବେ କର ପଦ ଥିଲା ବନ୍ଧ,
କୁଞ୍ଜ-କୋଇଲି ମଉନ, ମଳିନ କୁସୁମ ବିଗତ ଗନ୍ଧ,
ଗୁଞ୍ଜନ ଭୁଲି ଭୃଙ୍ଗ ନିକର ଗର୍ଜିଲେ ଅତି ମନ୍ଦ୍ର,
ପୁରୀ ଅନ୍ଧାର ହରାଇ ତାରକା, ଜନନୀ ନୟନ ଅନ୍ଧ ।

[ ୪ ]

ଚନ୍ଦ୍ରିକା !

ଯେବେ ଫେଇଥିଲ ଖର ଶ୍ୱାସେ,
ଘୂର୍ଣ୍ଣି ସରଜ କଠୋର ବଜ୍ର ପ୍ରବଳ ଗର୍ଜି ଆସେ ।
ଫେନ-ମୁକୁଟେ ଊର୍ମ୍ମି ବିକଟେ ଜଳଧି ଉରସେ ଭାସେ,
ମୂର୍ଚ୍ଛେ ଛନ୍ଦେ ପ୍ରଳୟ କାନ୍ଦେ ଦିଗ ଦିଗନ୍ତ ତ୍ରାସେ ।

[ ୫ ]

ଚନ୍ଦ୍ରିକା !

ଯେବେ ହେଲ ହେ ଜଗତ-ଜିତା,
ରକ୍ତାମ୍ବର ପହର ଚରଣ ବନ୍ଧିଲ ଜ୍ୱଳ-ଚିତା,
ଦନୁଜ-ଦଳନୀ ଜନନୀ ଡାକିଲେ ତେଜ ସନ୍ତାନ ଚିନ୍ତା,
ରୁଦ୍ର-ଶାନ୍ତ ବନ୍ଦୀ କରରେ ସାଜିଲ ମୋହନ-ଗୀତା ।

[ ୬ ]

ଚନ୍ଦ୍ରିକା !

ଯେବେ ଦେଲ କାନେ ଗୁରୁବାଣୀ,
ସତ୍ୟାଗ୍ରହୀ ମୁକ୍ତ-କଣ୍ଠେ ବହିଲ ଭୀଷଣ ହତ୍ୟା,
ହତ୍ୟା ନୁହଇ, ପ୍ରଖରେ ବହିଲ ଶକ୍ତିରେ ସେ କି ବାତ୍ୟା !
ଚଣ୍ଡ-ଶାସନ ପଣ୍ଡ ମଣିଲ ଦଣ୍ଡ-ମୁଣ୍ଡ କଣ୍ଠି ।

[ ୭ ]

ଚନ୍ଦ୍ରିକା !

ଯେବେ ଜାଗିଲ ସମର ସାଜେ,
ରକ୍ତବନ୍ଧୁ ପତନ ନୋହିଲା, ଶାନ୍ତି ମନ୍ତ୍ର ବାଜେ,
ଚକିତ ବିଶ୍ୱ ଦେଖିଲା ନାଃଖ୍ୟ ନୁହ ତ ଶକ୍ତି ରାଜେ,
ବନ୍ଦିଲ ଅରି ଚରଣ କମଳ ଆତ୍ମମରଣ ଲାଜେ ।

[ ୮ ]

ଚନ୍ଦ୍ରିକା !

ଯେବେ କିରଣ ଦେଲ ବିସାରି,
ଝରିଲା ଭୁବନେ ବିମଳ ତରଳ ଅମଳ ଶାନ୍ତି ବାରି,
ମୂର୍ଚ୍ଛି ଭଜିଲା ଦୁର୍ମଦ ଅରି ହିଂସା ବିଷ ଉଗାରି,
ବନ୍ଦେ ଭୁବନ, ଭାରତ-ଗଗନ ଅନ୍ଧ-ତମସ-ହାରୀ ।



# ସାରଥି

"ପଞ୍ଚ ପଡ଼ା ମାତ୍ର ମାଗେ
ନୁହେ ପଞ୍ଚ ରାଜ୍ୟ,
ଦିଅ ରାଜା ଦୁର୍ଯ୍ୟୋଧନ
ପାଣ୍ଡବର ନ୍ୟାଯ୍ୟ।"
ଶକୁନିର ପରାମର୍ଶେ
ରାଜା ଦୁର୍ଯ୍ୟୋଧନ,
ସୂଚ୍ୟଗ୍ର ମେଦିନୀ ଦାନେ
କରିଲା ବାରଣ।
କ୍ଷୁଣ୍ଣ ମନେ ବାହୁଡ଼ିଲେ
ସଭାରୁ ଗୋବିନ୍ଦ,
ଝାଉଁଳି ପଡ଼ିଛି ଶିରୀ,—
ମୁଖ-ଅରବିନ୍ଦ।

ପୁଚ୍ଛିଲେ ପାଣ୍ଡବ ମାତା
ପାଣ୍ଡୁ ପଞ୍ଚଭାଇ,
"କି ହେଲା ଗୋବିନ୍ଦ ! କିପାଁ
ମନେ ସୁଖ ନାହିଁ ?"

କହିଲେ ଶ୍ରୀକୃଷ୍ଣ,
"ଗଲି ପଞ୍ଚପଡ଼ା ମାଗି,

ମନା କଲା ଦୁର୍ଯ୍ୟୋଧନ,
ଭିକ୍ଷା ଦାନ ଲାଗି ।"
ଭୀମ କହେ, "ଜାଣେ ମୁହିଁ
ପୂର୍ବେ ତ କହିଛି,

ଉପଦେଶ ଅନୁରୋଧେ —
ଫଳ ନାହିଁ କିଛି ।

ତୁଟିଲା ତ ମୋହ ଏବେ
ଭାଙ୍ଗିଲା ତ ନିଦ,

ଅପମାନେ ଫେରିଲେ ତ
ଆପଣେ ଗୋବିନ୍ଦ ?

ଅର୍ଥ ବଳେ, ଅନ୍ନ ବଳେ
ରାଜ୍ୟ ଦେଇ ଅବା,

କିଣି ଅଛି ଦୁର୍ଯ୍ୟୋଧନ
ଦ୍ରୋଣ କର୍ଣ୍ଣ ସଭା ।

ଗର୍ବ-ପର୍ବତେ ହୋଇଛନ୍ତି
ପକ୍ଷର ସୃଜନ,
ସେ କିପାଁ ଶୁଣିବ
କହ ଗୋବିନ୍ଦ ବଚନ ?"

ସବୁଥିରେ ଜ୍ୟେଷ୍ଠ ଖାଲି
ଦୋଳାଇବେ ମଥା,
ନହୁ କେତେ କାଳୁ କଥା
ହୁଅନ୍ତା ଅନ୍ୟଥା ।"

କହିଲେ ଗୋବିନ୍ଦ,
"ଆଉ କଥାରେ କି କାର୍ଯ୍ୟ ?
ମନେ ହୁଏ,—କୁରୁକ୍ଷେତ୍ର
ଯୁଦ୍ଧ ଅନିବାର୍ଯ୍ୟ ।"

ଧର୍ମ୍ମରାଜ ମନ ଦୁଃଖେ
କହିଲେ, "ହେ ହରି,
ବନ୍ଧୁ ବନ୍ଧୁଙ୍କ ଅସିଦ୍ଧି
କେ ପାରିବ କରି ?

ପିତାମହ ଭୀଷ୍ମ, ପୁଣି
ଦ୍ରୋଣ ଅସ୍ତ୍ରଗୁରୁ,
ଏମାନେ କି ଅସ୍ତ୍ରଧାରୀ
ହେବେ ସେ ସମର ?"

"ଅନ୍ଧପୁତ୍ର, ଦୁର୍ଯ୍ୟୋଧନେ
ଭେଟିବେ କିପରି ?
ଷଡଯନ୍ତ୍ରର ଅନ୍ତ କାହିଁ ?"
କହିଲେ ଶ୍ରୀହରି ।

ଅର୍ଜୁନ କହିଲେ, "ସଖା, !
ନାହିଁ ମୋର ଡର
ନିଜ କଥା କହିବଟି
ଆପଣେ ଶ୍ରୀଧର !

ସଂଶପ୍ତକ ସେନା ତୁଲେ
ତୁମ୍ଭେ ଥିଲେ ଏକା,
ବିଜୟୀ ପାଣ୍ଡବ ନାମେ
ସ୍ୱର୍ଣ୍ଣାକ୍ଷରେ ଲେଖା ।"

ଶ୍ରୀକୃଷ୍ଣ କହିଲେ, "ଶୁଣ,
ପାଣ୍ଡବ ମଧ୍ୟମ
ଇତି ମଧ୍ୟେ ଘଟିଲାଣି
ଅଘଟ ଘଟନ ।

ଜାଣ ତୁମ୍ଭେ ହଳଧର
ବନ୍ଧୁ କୌରବର
ନୀରବ ରହିବ ମୁହିଁ
ଇଚ୍ଛା ତାହାଙ୍କର ।

ଗର୍ବ-ପର୍ବତେ ହୋଇଛନ୍ତି
ପକ୍ଷର ସୃଜନ,
ସେ କିପାଁ ଦେଖିବ
କହ ଗୋବିନ୍ଦ ବଚନ ?"

ସବୁଥିରେ ଜ୍ୟେଷ୍ଠ ଖାଲି
ଦୋଳାଇବେ ମଥା,
ନତୁ କେତେ କାଲୁ କଥା
ହୁଅନ୍ତା ଅନ୍ୟଥା ।"

କହିଲେ ଗୋବିନ୍ଦ,
"ଆଉ କଥାରେ କି କାର୍ଯ୍ୟ ?
ମନେ ହୁଏ,—କୁରୁକ୍ଷେତ୍ର
ଯୁଦ୍ଧ ଅନିବାର୍ଯ୍ୟ ।"

ଧର୍ମ୍ମରାଜ ମନ ଦୁଃଖେ
କହିଲେ, "ହେ ହରି,
ବନ୍ଧୁ ବନ୍ଧୁଙ୍କି ଅସିଦ୍ଧି
କେ ପାରିବ କରି ?

ପିତାମହ ଭୀଷ୍ମ, ପୁଣି
ଦ୍ରୋଣ ଅସ୍ତ୍ରଗୁରୁ,
ଏମାନେ କି ଅସ୍ତ୍ରଧାରୀ
ହେବେ ସେ ପକ୍ଷରୁ ?"

"ଅନ୍ନପୁଷ୍ଟ, ଦୁର୍ଯ୍ୟୋଧନେ
ଦେଖିବେ କିପରି ?
ଗତଯନ୍ତ୍ରର ଅଛି କାହିଁ ?"
କହିଲେ ଶ୍ରୀହରି ।

ଅର୍ଜୁନ କହିଲେ, "ସଖା, ।
ନାହିଁ ମୋର ଡର
ନିଜ କଥା କହିବଟି
ଆପଣେ ଶ୍ରୀଧର ।

ସଂଶପ୍ତକ ସେନା ତୁଲେ
ତୁମ୍ଭେ ଥିଲେ ଏକା,
ବିଜୟୀ ପାଣ୍ଡବ ନିଶ୍ଚେ
ସ୍ୱର୍ଣ୍ଣାକ୍ଷରେ ଲେଖା ।"

ଶ୍ରୀକୃଷ୍ଣ କହିଲେ, "ଶୁଣ,
ପାଣ୍ଡବ ମଧ୍ୟମ
ଇତ ମଧ୍ୟେ ଘଟିଲାଣି
ଅଘଟ ଘଟନ ।

ଜାଣ ତୁମ୍ଭେ ହଳଧର
ବନ୍ଧୁ କୌରବର
ନୀରବ ରହିବ ମୁହିଁ
ଇଚ୍ଛା ତାହାଙ୍କର ।

ଆମନ୍ତ୍ରିଛନ୍ତି ନିଜ ପକ୍ଷେ
ମୋତେ ଦୁର୍ଯ୍ୟୋଧନ,
ସଭାରେ ମୁଁ କହି ଅଛି
ଏମନ୍ତ ବଚନ :—

"ଏ ସମରେ ଅସ୍ତ୍ର ମୁହିଁ
ନ କରିବ ଧେନା
ଯୁଦ୍ଧେ ଯୋଗ ଦେବେ ମୋର
ସଂଶପ୍ତକ ସେନା ।

ନିରସ୍ତ୍ର ରହିବ ମୁହିଁ,
ଯାହା ପକ୍ଷ ଧରି
ସେନାଏଁ ଯୁଝିବେ ତାର
ବିପକ୍ଷ ଆଦରି ।"

କହିଲେ କିରୀଟୀ, "ଦେବ,
କର ସମାଧାନ,
କେଉଁ ପକ୍ଷେ ସଂଶପ୍ତକ,
କାହାର ଆପଣ ?

ସତ୍ୟ ଯେବେ କରି ଅଛ
ଆପଣେ ଶ୍ରୀଧର,
ମୀମାଂସା ଆପଣା ହାତେ,
ପ୍ରଶ୍ନ ଗୁରୁତର ।"

"ଏହି ପ୍ରଶ୍ନ କରିଥିଲେ
ମୋତେ ଦୁର୍ଯ୍ୟୋଧନ,"
ଶ୍ରୀ କୃଷ୍ଣ କହିଲେ "ଶୁଣ,
ଦେଇଛନ୍ତି ବଚନ :—
ଶୟନାନ୍ତେ ଆଜ ନିଶି
ହୋଇଲେ ପ୍ରଭାତ,
ଦୁର୍ଯ୍ୟୋଧନ, ସବ୍ୟସାଚୀ
ଥିବେ ଉପଗତ ।
ନିଦ୍ରା ତେଜ ମୁଖ ଯାର
ପ୍ରଥମେ ଦେଖିବ
ନ ଧରିଣ ଅସ୍ତ୍ର ମୁହିଁ
ତା ପକ୍ଷେ ରହିବ ;
ବିପକ୍ଷ କୁଳରେ ମୋର
ସଂଶପ୍ତକ ସେନା,
ଏ କଥାକୁ ସଭାସ୍ଥଳେ
ସର୍ବେ କଲେ ଘେନା ।"
ଅର୍ଜ୍ଜୁନ ବୋଇଲେ,
"ସଖା ! ତୁମ୍ଭ କଥା ରହୁ,
ସମଦୃଷ୍ଟି ଗୋବନ୍ଦର
ତ୍ରିଭୁବନ ଗାଉ ।"



—ଦୁଇ—

ଚିନ୍ତିତ ଅନିଦ୍ର ପାର୍ଥ
ପୁହାଇ ଶର୍ବରୀ,
କୃଷ୍ଣ ସନ୍ନିଧାନେ ଗଲେ
ଗୋବିନ୍ଦ ସୁନ୍ଦର ।
ଦେଖିଲେ ସେ ଭଜନାହିଁ
ଶ୍ରୀହରି— ଶୟନ,
ଶୀର୍ଷସ୍ଥାନେ ବସିଛନ୍ତି
ମାନୀ ଦୁର୍ଯ୍ୟୋଧନ ।
ପଦତଳେ ଉଭାହେଲେ
ଅନୁଗତ ନର,
ଦେଖି ଦୁର୍ଯ୍ୟୋଧନ ଚିତ୍ତେ
ଘୃଣା ଗଲା ଭରି ।
ଡାକିଲା କଜ୍ଜଳପାଖି
ଶେଷେ ବିଭାବରୀ,
କମଳ-ନୟନ ମେଲି
ଚେତିଲେ ଶ୍ରୀହରି ।
ପଡ଼ିଲା କରୁଣା-ନେତ୍ର
ଅର୍ଜୁନର ପରେ,
ସ୍ନେହ ଭକ୍ତି ଘେନ
ପାର୍ଥ ପ୍ରଣମେ ପୟରେ ।

ହସି ପାର୍ଥେ ହର କଲେ
ଶୁଭ ସଂଭାଷଣ,
ଅଭିମାନେ ଦୁର୍ଯ୍ୟୋଧନ
ଡେଜିଲେ ଆସନ ।

ଗୋବନ୍ଦ ଦେଖିଲେ ପଛେ
ରାଜା ଦୁର୍ଯ୍ୟୋଧନ,
ପଚ୍ଚାରିଲେ "କେତେବେଳେ
ଆସିଛ ଆପଣ ?"

"ଆସିଲିଣି ବହୁକାଳୁଁ"
ଭାଷେ ଦୁର୍ଯ୍ୟୋଧନ
"ମୋହୋପରେ ପ୍ରବେଶିଲେ
ପାଣ୍ଡବ-ମଧ୍ୟମ ।"

"ନୟନ ମେଲଇ କିନ୍ତୁ
ଦେଖିଲୁ ପହିଲେ
କିରୀଟି ବଦନ", —ବୋଲି
ଶ୍ରୀକୃଷ୍ଣ କହିଲେ ।

"ତେଣୁ ମିଜେ ଯୋଗ ଦେବି
ପାଣ୍ଡବ ପକ୍ଷରେ,
ବଚନ ପ୍ରମାଣେ ଅସ୍ତ୍ର
ନ ଧରିବି କରେ ।"

ଦୁର୍ଯ୍ୟୋଧନ କହେ "ମୁଁ ଯେ
ଆସିଛି ପ୍ରଥମ,"
ଶ୍ରୀକୃଷ୍ଣ ଭାଷିଲେ "ନିଦ୍ରା-
ତେଜି ମୋ ନୟନ,—

ଅର୍ଜୁନେ ଭେଟିଛି, ତେଣୁ
ଦୋଷ ନ ବିଚାର
ସଂଶପ୍ତକେ ଯୋଗଦେବେ
କୁରୁ ସ୍କନ୍ଧାବାର ।"

ପାର୍ଥ କହେ "ସଖା, ବନ୍ଧୁ,
ପ୍ରଭୁ ଚକ୍ରଧର,
ଜୀବନ ସାରଥି ! ହୁଅ
ସାରଥି ରଥର ।"



# ଶିରଦାନ

[ ୧ ]

ସ୍ତିମିତ ବିଦ୍ରୋହ-ବହ୍ନି କୁଣ୍ଠ କଉଶଳେ,
ଦଳିତ ଉନ୍ନତ ଶିର ଚମତ୍କାର କଲେ,
ମରକର କ୍ରୁର ହାସ୍ୟ ଭରି ଧରିତଳେ,
ନୀରବ ନିଷ୍ପନ୍ଦ ଗ୍ରାମ ରାଜ-କର ଡରେ ।

[ ୨ ]

ତଥାପି ଗଗନୁ ଲିଭି ନାହିଁ ଧୂମ ଶିଖା,
ବୀର ଜଗବନ୍ଧୁ ଭାଲେ ଲେଖା ସିନା ଭିକ୍ଷା,
ପାସୋରି ନାହିଁ ପାଇକ ବୀର ବଂଶ ଦୀକ୍ଷା,
ପାରିବ କି ଭୁଲି ଯାହା ଆଜନମ ଶିକ୍ଷା ।

[ ୩ ]

ଝଡ଼ ତ ପଡ଼ିଛି ଜୟୀ ରାଜଗୁରୁ ମୁଣ୍ଡ ,
ଶାସକ—ଶାସନେ ମୂକ ବାବଦୂକ ତୁଣ୍ଡ,
ଦରିଆରେ ଧାଇଁ ହେଲା ଲୁଣ-ଛଣା ଖଣ୍ଡ,
କଉଡ଼ ବଦଳେ ଠେଙ୍ଗା-କର-ଦଆ ଦଣ୍ଡ ।

[ ୪ ]

ଶୋଷକ-ଶାସକ ଜୁଟ ଫିରିଙ୍ଗିର ଦଳ,
ବିଜୟ ଦର୍ପରେ ହେଲେ ନିର୍ବାହର ଗଳ,
ଉତ୍ପୀଡ଼ିତ ନିର୍ବିଘ୍ନରେ ଭେଲ ଅବା ଭଲ,
ଅସ୍ମୁନେ ଥରିଗଲା ଏ ସାରା ଉତ୍କଳ ।

[ ୫ ]

ତଥାପି ନିର୍ଜୀବ ଗ୍ରାମ କୃଷ୍ଟି ଭୁଲି ନାହିଁ,
ତଥାପି ଉତ୍କଳ ପଲ୍ଲୀ, ଝୁରେ ଗୁଣ ଗାଇ :—
ବକ୍ସୀ, ରାଜଗୁରୁ ତାର ପ୍ରାଣ ଦଆ ଭାଇ,
ଗର୍ଜନ କି ଭୁଲେ ସିଂହ ବାଗୁରାରେ ଥାଇ ?

[ ୬ ]

ଆଜି ମଧ୍ୟ ନଇଁ ନାହିଁ ମାଣତଣ୍ଡୀ ଗଡ଼,
ଲଢ଼ିବାକୁ ଝୁଣ୍ଡା ଦଳ-ବେହେସ୍ତର ହାଡ଼,
କଳ ଘଟରେ ଗୋରା ଜାତି ଅତ୍ୟାଚାରର ମାଡ଼,
ଡେଇଁ ପାରି ନାହିଁ ଗଡ଼ ସୀମା କଣ୍ଟାବାଡ଼ ।

[ ୭ ]

ଖାଇ ରହିଛନ୍ତି ଯେତେ ଫିରିଙ୍ଗି ନିମକ,
କର ଲଗି ଗ୍ରାମେ ଗ୍ରାମେ ବଜାନ୍ତି ଢମକ,
ଅନାଗୃହୀ ଅତ୍ୟାଗୃହୀ ଅସ୍ୱର ଧମକ,
ଦଳ-ବେହେରାଙ୍କ ନାମେ ଲଭଇ ଚମକ ।

[ ୮ ]

ପ୍ରମାଦ ଗଣିଲେ ମନେ ଖୋରଧା ଶାସକ,
ଗର୍ଜ୍ଜି କହେ ରକ୍ତମୁଖା ବଣିକ ଶୋଷକ,
"ମାଣବୀ ଗଡ଼ର ଛାର ନିର୍ଜୀବ କୃଷକ,
ଖେଳାଇ ମତାଏ ପୁଣି ଅରଣ୍ୟ-ଶଶକ !

[ ୯ ]

ଯାଅ ରେ ଫଉଜ, ବେଗେ କର ଆଣ ବନ୍ଦୀ,
ରାଜଦ୍ରୋହ ସୂତ୍ର ଯୋଖି ଦିଅ ତାଙ୍କୁ ଛନ୍ଦ,
ତୀବ୍ର କଶାଘାତେ ତୁଲାଇବ କାନ୍ଧ କାନ୍ଧ,
ଦଣ୍ଡକରେ, ପଣ୍ଡ ହେବ ବିଦ୍ରୋହୀର ଫାନ୍ଦ ।"

[ ୧୦ ]

ସଂବାଦରେ ହାହାକାରେ ଭରିଗଲା ଦେଶ,
ପଲକରେ ଉଭାଇଲା ସୁଖଶାନ୍ତି ଲେଶ,
ବିଚାରିଲେ ଜନେ ଏ କି ପ୍ରଳୟ ପ୍ରବେଶ !
ଗୁପତେ ଦଳବେହେରା ଶୁଣିଲେ ଆଦେଶ ।

[ ୧୧ ]

ଜୀବନର ମାୟା ! ଦଳ ବେହେରା କି କରେ ?
ଦେଶ ଲାଗି, ଜାତି ଲାଗି ପିନ୍ଧା ଛାଡ଼ି ଥରେ,
ନଶ୍ୱର ନିର୍ଜୀବ ପ୍ରଜା ଶାସନ କରିଲେ,
କାହା ବଳେ ବର୍ତ୍ତିବେ ସେ ଏ ପ୍ରମାଦ କାଳେ ?

[ ୧୨ ]

ବଣିକ ପଣେ ମାଣିକ ଛାଣେ ଏ ଶୋଷକ,
କାନେ ଗୁଣୁ ଗୁଣୁ ଗାଇ ଦଂଶଇ ମଶକ,
ପ୍ରଜା ଉଷ୍ଣ-ରକ୍ତେ ଭରେ ଶାସକ—ଚଷକ ।
କ୍ଷୀର ଦାନେ କେ ହୋଇବ ତକ୍ଷକ ପୋଷକ ?

[ ୧୩ ]

ଜୀବନେ ଥାଉଁ ଫିରିଙ୍ଗି ଆକର୍ଷିବ କେଶ ?
ସମରେ ମରଣେ ମୋର ନାହିଁ ଦୁଃଖ ଲେଶ,
ତହୁଁ ଦଳବେହେରାଏ ଧରି ଛଦ୍ମ ବେଶ ।
ମନସୁଖେ ବାରନେଲେ ଘୋର ବନ ଦେଶ ।

[ ୧୪ ]

ଭସ୍ମ ଗର୍ଭେ ବହ୍ନି ଯଥା କୁହୁଳି ଜ୍ୱଳଇ,
ଖୋରଧା ପାଇକ ହୃଦେ ବିଦ୍ରୋହ ଖେଳଇ,
ସଙ୍କେତ-ଅରେଣ୍ୟେ ନିଶି ଯୋଗେ କେ ଚଳଇ,
ତହିଁ ଦଳ-ବେହେରାଙ୍କ ନିର୍ଦ୍ଦେଶ ମିଳଇ ।

[ ୧୫ ]

ବହୁତ ହେଲେ ଶାସକ ମେଳ ନ ଭାଙ୍ଗିଲା,
ଓଃ! ହେବା ଦୂରେ ଥାଉ ପ୍ରବଳେ ଫେଣିଲା,
ଏ କି ହେଲା ? ଏ କି ହେଲା ? ଶବଦ ବାଜିଲା,
ଗୋପନେ ଦଳ ବେହେରା ଦଳ ତ ସାଜିଲା !

[ ୧୬ ]

ମାଣିକୀ ଗ୍ରାମେ ଅଛନ୍ତି ସଙ୍ଗେ ତ ଘେର,
ସମ୍ବାଦ ଆସେ ଶାସକେ ଛନ୍ତି କର୍ଣ୍ଣ ଡେର,
ସନ୍ଧାନ ନ ମିଳେ ଚର କହେ ଆସି ଫେର,
ତଥାପି ଚୌଦିଗେ ବାଜେ ବିଦ୍ରୋହର ଭେରୀ ।

[ ୧୭ ]

ନିରୁପାୟେ ସ୍ଥିର କଲେ ପ୍ରକାଶ୍ୟ ପ୍ରଚୁର;
ନାଗରା ବଜାଇ ଗ୍ରାମେ ଗ୍ରାମେ ରଟେ ଚୁର,
"ଭେଟି ଦେଲେ ମୁଣ୍ଡ କାଟି ଦଳ ବେହେରାର,
ପାଞ୍ଚଶତ ମୁଦ୍ରା ହେବ ପୁରସ୍କାର ତାର ।"

[ ୧୮ ]

ରୁଷିଲେ ପାଇକେ ଶୁଣି ଏସନ ବଚନ,
କେ ଅଛି ଓଡ଼ିଶା ଦେଶେ ଏଡ଼େ ହୀନମାନ,
ଦଳବେହେରାଙ୍କୁ ଧରି ଦେବ କାହା ମନ ?
ଚଣ୍ଡୀ ଆଗେ ହେବ ଆଗେ ତାର ବଳି ଦାନ ।

[ ୧୯ ]

ଏ କାଳେ ଧୀବର ଏକ ନଉକା ବୁଡ଼ନ୍ତି,
ଦଳ ବେହେରାଙ୍କ ଦାନ କର୍ତ୍ତରେ ପଡ଼ନ୍ତି,
ମାଣିକୀ-ଗଡ଼-ବାହୁଣୀ-ପଥ ସେ ହୁଡ଼ନ୍ତି,
ବନ-ମାର୍ଗ ଧରି କେନ୍ଦୁ ଦୁଲୁଁ ବାହୁଡ଼ନ୍ତି ।

[ ୨୦ ]

ପ୍ରଶାନ୍ତ ସୌମ୍ୟ ମୂରତି କଷାୟ-ବସନ,
ସର୍ବ-ଅଙ୍ଗେ ଯୋଗ-ସିଦ୍ଧ ପୁରୁଷ ଲକ୍ଷଣ,
ବାହୁଡ଼ା ପଥେ କୈବର୍ତ୍ତ କରିଲ ଦର୍ଶନ,
ପ୍ରଣମି ଚରଣେ କରେ ଦୁଃଖ ନିବେଦନ ।

[ ୨୧ ]

"ବୁଡ଼ିଲା ନଉକା ଖଣ୍ଡି ଅଥଳ ଜଳରେ,
ନାହିଁ କେହି ଆନ ସାହା ମୋର ଏ କାଳରେ,
ଯାଉଥିଲି ମାଣିକଟି ଗ୍ରାମେ ସକାଳରେ,
ପଡ଼ନ୍ତି ମୁଁ ପଥବଣା ହୋଇ ଅକାଳରେ ।"

[ ୨୨ ]

"ମାଣିକୀ ଦଳ ବେହେରା, ସଂସାରେ ବୋଲନ୍ତି,
ଗରିବ ଦୁଃଖୀର ଦୁଃଖ ସହି ନ ପାରନ୍ତି,
ତାଆ ଲାଗି ସାହା ହେବେ ଭିକ୍ଷା ମାଗିଥାନ୍ତି,
ଜାଣିଛ କି ? କେଉଁ ପଥେ ମାଣିକୀ ଯାଆନ୍ତି ?"

[ ୨୩ ]

"ଏକେତ ଦରିଦ୍ର ଘରେ ଅନ୍ଧୁଣୀ ଘରଣୀ,
ଅରକ୍ଷ ବିଧବା କନ୍ୟା ସନ୍ତାନ-ଜନନୀ,
ମୂଲ ଲଗି ପାଲନ୍ତି ବା, ବୟସ ଗଲଣି,
ତିନି ଦିନ ହେଲା ତୁଣ୍ଡି, ନ ଦେଖେ ତୋରାଣି ।"

[ ୨୪ ]

"ଭଙ୍ଗା କୁଡ଼ିଆରୁ ପାଣି ଧାର ଧାର ଝରେ,
ନଉଠା ବୁଢ଼ିବା ଦିନୁ କମ୍ପେ ଶିତାଜ୍ୱରେ,
ଆସିଛନ୍ତି ପଳାଇ କଛନ୍ତି ନ କହି ମୁଁ ଘରେ,
ବାହୁଡ଼ି ଦେଖିବ କି ସେ ଥିବେ ଜୀବନରେ ?"

[ ୨୫ ]

ଆଘାତ ଲଗିଲା ଶୁଣି ଜୀବନ-ତନ୍ତ୍ରରେ,
ଝଳି ଦିଶେ ନୀର ବିନ୍ଦୁ ନୟନ ପ୍ରାନ୍ତରେ,
ଅନ୍ତର ଭାବନା ରଖି ଗୁପତେ ଅନ୍ତରେ,
ପ୍ରବୋଧିଲେ ଛତାଧାରୀ ମୋହନ ମନ୍ତରେ ।

[ ୨୬ ]

"ଆହା ! ଆହା ! ତୁମେ ଅବା ଜାଣିବ କେମନ୍ତ,
ଆଜକୁ କେଜାଣି ହେବ ଆଠ ମାସ ଅନ୍ତ,
ଦଳ ବେହେରର ପର ହେଲଣି ଦେହାନ୍ତ,
ଉପାୟେ କହିବ ଧନ ପାଇବ ଯେମନ୍ତ !

[ ୨୭ ]

ନ ଭାଳ ମନରେ କିଛି ଆସ ମୋ ସଙ୍ଗର,
କୁଟୁମ୍ବ ପାଳିବ ସୁଖେ ନ ହୁଅ କାତର,"
କୃତକୃତ୍ୟେ ଚରଣରେ କରି ନମସ୍କାର,
ଚଳଇ କୈବର୍ତ୍ତ, ଲଘୁ ହେଲ ହୃଦ-ଭାର ।

[ ୨୮ ]

ଦଳ ବେହେରାର କାହିଁ ନାହିଁ ଚିହ୍ନ ବର୍ତ୍ତି,
ସଂବାଦ-ଆସେ ଶାସକ ସତତ ଉତ୍କର୍ଣ୍ଣି,
ପ୍ରକାଶ୍ୟ ପାରିତୋଷିକ ହୋଇଛି ଘୋଷଣ,
ଏବେହେଲେ କାହିଁ ତାର ନ ମିଳେ ସନ୍ଧାନ ।

[ ୨୯ ]

ମସ୍ତକରେ ଜଟାଜୁଟ ଶ୍ମଶ୍ରୁଳ ବଦନ,
ଦୀପ୍ତିମନ୍ତ ଚକ୍ଷୁ କରେ ସୁଧା ବରଷଣ,
ଗୌରତନୁ ସନ୍ନ୍ୟାସୀ କେ ଦେଲେ ଦରଶନ,
ସଙ୍ଗତେ ଲୋଲିତ-ଚର୍ମ ବୃଦ୍ଧ ଦୀନ ଜନ ।

[ ୩୦ ]

ଶାସକେ ଭାଷିଲେ, "ଅଛି କିଛି ନିବେଦନ,
ମାଣିକୀ ଦଳ ବେହେରା ବିଦ୍ରୋହୀ ପ୍ରଧାନ,
ତା ଶିର ପ୍ରତିବଦଳେ ଦେବ ପରି ଧନ ?
ଦରବାରୁ ହୋଇଅଛି ପ୍ରକାଶ୍ୟ ଘୋଷଣ ।

[ ୩୧ ]

ସମ୍ମୁଖରେ ଉଭା, ତବ, ମୁହିଁ ସେ ଦୁର୍ଜନ,
ଧରି ଆଣିଅଛି ମୋତେ କୈବର୍ତ୍ତ ନିର୍ଦ୍ଧନ,
ଶିର କଲି ଦାନ, ଦିଅ ଏହା କରେ ଧନ ”
ଉଚ୍ଚସ୍ଥ ଶାସକ ମୁଖୁଁ ନ ସ୍ଫୁରେ ବଚନ ।

[ ୩୨ ]

ପ୍ରଳୟର ଘୂର୍ଣ୍ଣି ଅବା ମସ୍ତକେ ଘୂରିଲା,
ଚକିତ ଶାସକ, ବୁଦ୍ଧି ବିବେକ ହାରିଲା,
ଜୀବନ୍ତ ସତ୍ୟକୁ ସ୍ୱପ୍ନ ବୋଲି ବିଚାରିଲା,
ସହସା ନୟନ ଆଗେ ଜ୍ୟୋତି ପ୍ରସରିଲା !

[ ୩୩ ]

ନିଶ୍ଚଳ ହୋଇଲା ଅଙ୍ଗ ପକ୍ଷାଘାତ ସମ,
ସମ୍ମୁଖରେ ଦେଖଇ ସେ ଭକ୍ତ, ଭଗବାନ,
ପୃଥିବୀ ସେପାରି କଥା ଶୁଣାଇ ତା କାନ ।
ତ୍ୟାଗ ପୁଣି ଏତେ ? —ପର ଲାଗି ଶିରଦାନ !



# ଦିଗ୍‌ବିଜୟ

ଆଜକାଲି ନୁହେଁ ଅତୀତ ଗୌରବ
ସାତଶ ବରଷ ତଳେ,
ଗଙ୍ଗ କୁଳର ଅମଳ କୀରତି
ଝଟକୁ ଥିଲା ଉଜ୍ଜଳେ ।

ସୁଦୂର ବିଦର କୁଳବର୍ଗ ଜେତା
ଅମର ପୁରୁଷ ସିଂହ,
ଚକ୍ରବର୍ତ୍ତୀ ପଣେ ଛତ୍ର ଟେକିଥିଲେ
ଲାଙ୍ଗୁଳା ନରସିଂହ ।

ଗୁରୁଗମ୍ଭୀରେ ଗଙ୍ଗ-ଗରିମା
ଘୋଷଇ ଦିଗ ଦିଗନ୍ତ,
ବନପ୍ରିୟ ବୋଲେ ବୁଲି ବନେ ଯାର
ବିଜୟ ଚିର ବସନ୍ତ ।

ପୁଆଣି ପୁଅରେ ବନ୍ଧାଣି ପୁଅଟି
କଳା ରଖୁଥିଲା ଛନ୍ଦ,
ଲେଖନୀ ମୁନରେ କାବ୍ୟ ରାଣୀକି
କବି କରୁଥିଲା ବନ୍ଦୀ ।

ଜୟ ଡିଣ୍ଡିମ ବଜାଇ ପାଇକେ
ନାଚୁଥିଲେ ରଣ ମେଳ,
ତୀର, ଧନୁ, ଢାଲ, ତରବାରି ପରି
ଥିଲା ବାଳକର ଖେଳ ।

ଯାଜ ନଗରରେ କଟକାଇ ରଣ
ଗଙ୍ଗ-କୁଳ ତିଳକ,
ନଅର ଚୂଡ଼ାରେ ନେତେ ଶଣିଥିଲେ
ସ୍ୱାଧୀନ ରାଜ-ଫଳକ ।

ସାମ-ଭେଦ-ଦଣ୍ଡ-ଦାନ-ଜ୍ଞାନବନ୍ତେ
ମଣ୍ଡିଥିଲେ ରାଜସଭା,
ସଚିବ ଗୋବିନ୍ଦ, ସାମନ୍ତରାୟ ସେ
ଉତ୍କଳ ବାହିନୀ ଶୋଭା ।

ଏହି ସେ ଗୋବିନ୍ଦ ଅନଙ୍ଗ ଅମଳେ
ତୁହ୍ମାନ ନରେଶ ଯମ,
ବିନ୍ଧ୍ୟ ମୂଳରେ ଯବନ ବିଜୟୀ
ଇତିହାସ ଘୋଷେ ନାମ ।

ପ୍ରଜା ପାତ୍ର ମନ୍ତ୍ରୀ ଘେନି ନରେଶ୍ୱର
ବସନ୍ତି ବଜ୍ରେ ସିଂହାସନେ,
ଗଗନ ମଣ୍ଡଳ କମ୍ପି ଉଠୁଥାଏ
ବୈତାଳିକ ଯଶୋଗାନେ ।

ଏକାଳେ ନୃପତି ପାଦ ବନ୍ଦେ ଆସି
ଅନନ୍ତ ନାମରେ ଚର,
କହେ ଜଣାଇବି ଯେବେ ଆଜ୍ଞା ହେଲେ
ଏକାନ୍ତରେ ସମାଚାର ।

ହସି ମହାରାଜ ଭାଷିଲେ ଚରକୁ
"ନାହିଁ କେ ଏଠାରେ ପର,
ପ୍ରଜା ତ ସନ୍ତାନ, ପର ବିଚାରିଲେ
କିଏ ଆଉ ଆପଣାର ?

କହିବାର ଯାହା ନ ରଖି ଗୁପତ
ସଭାରେ ବ୍ୟକତ କର,
ଶୁଣନ୍ତୁ ଦେଶର ପାତ୍ର ଅମାତ୍ୟ
ଶୁଣନ୍ତୁ ପ୍ରଜା ସକଳ ।

ଏ ରାଜ ମୁକୁଟ, ଏ କୁଳ ମହତ୍ତ୍ୱ
ମୂଳେ ତାଙ୍କ ବାହୁବଳ"
ବାଣୀ ଶୁଣି ଜୟ ଜୟ କାର ନାଦେ
ସଭାରୁ ଉଠେ ଚହଳ ।

ଚର ଭଣେ, "ପ୍ରଭୁ ! ଶୁଣ ବୀର ପଣ
ଜଗତ ଯାକରେ ଛନ୍ଦା,
ଯଶ-ଅସହଣି ଗଉଡ଼ ଦେଶର
ନବାବ ହେଲାଣି ବନ୍ଦା ।

ଲକ୍ଷ୍ମଣାବତୀରେ ସଇନ ସାଜୁଛି
ଝଟପଟ ପଶିବ ଗଡ଼େ,
ଉତ୍କଳ ନରେଶ କାବୁ ହେବେ ବୋଲି
ମନ୍ତ୍ରଣା ବସି ଗଢ଼େ ।

ପଥେ କଟାସିଂହ ଦୁର୍ଗ ଆକ୍ରମଣେ
ଯବନ ବଳାଏ ମତ,
ହେଲାଣି ଆଜକୁ ଏକ ମାସ କାଳ
ଛାଡ଼ିଲି ଲକ୍ଷ୍ମଣାବତୀ ।"

ଶୁଣି ଚର ବାଣୀ ଉଲ୍ଲାସେ ଭାଷିଲେ
ଗୋବିନ୍ଦ ସଚିବ ମଣି,
"ଅସି ଧର ସୁଖ ବହୁ କାଳ ପରେ
ଜଗନ୍ନାଥ ଦେଲେ ଆଣି ।

ଶୁଖିଥିଲା ଭଲି ଥରେ ତ ତୁଥାନ
ଶୁଖି ନ ଥିବ ସେ ଘାଆ,
ଏଡ଼େ ବେଗେ ପୁଣି ପ୍ରତିଶୋଧ ଚିନ୍ତା
ଝାଡ଼ ବସିଲାଣି ବାହା ।

ଦଳ ବାନ୍ଧ ମେଳ ହୁଅନ୍ତୁ ପଛକେ
କୋଟିଏ କ୍ଷ୍ୟାତ୍ରଙ୍ଗଣ,
ବଉଦ ଉହାଡ଼େ ଥିଲେ ହେଲେ ଶଶୀ
ଲୁଚେ କି ତାର କରଣ ?"

ସମବେତ ପ୍ରଜା ପାରିଷଦ ଗଣେ
ନୃପ କର ସମ୍ବୋଧନ,
କହିଲେ, "ସଂବାଦ ଦୂତ ଦେଲା ଯାହା
କରିଲ ତ ଅବଧାନ ।

ତୁର୍କୀ ସହଜେ ଅତି କ୍ରୂରମତି
ପ୍ରତିହିଂସା ଚିନ୍ତେ ମନ,
ଯାଜପୁର ଦୁର୍ଗ ଚଢ଼ାଉ କରିବ
ହୁଅ ସର୍ବେ ସାବଧାନ ।

ସ୍ୱାଧୀନ ଦେଶର ଗରବ ବିଭବ
ରଖିବା, ମରିବା ଅବା,
ପଣ ଏକା ଚିନା ପଉରୁଷ ପଣ
କି ମନ୍ତ୍ରଣା ଦିଏ ସଭା ?"

ଜୟ ମା କଳିଙ୍ଗ, ଜୟ ନରସିଂହ
କୁହାଟେ କମ୍ପିଲା ଧରା,
ରଣଭେରୀ ନାଦ ପ୍ରତିଧ୍ୱନି ଦେଲା
ବନ ପରବତ ସାରା ।

—ଦୁଇ—

କଳିଙ୍ଗ ସୀମାର ଉତ୍ତର ପ୍ରାନ୍ତରେ
ଉଭା କଣ୍ଠାଶିହ ଦୁର୍ଗ,
ମହାନଦୀ ଯହିଁ ଅର୍ଦ୍ଧଚନ୍ଦ୍ରାକାରେ
ସାଗରେ ଅରପେ ଅର୍ଘ୍ୟ ।

ତୁଙ୍ଗ ପଟ୍ଟଣ ଗଡ଼ ଶୃଙ୍ଗ ତ ଉତ୍ତୁଙ୍ଗ—
ଶିଖରୀଙ୍କୁ ଜିଣି ଦର୍ପେ,
ଘେରି ଚଉପାଶେ ଗମ୍ଭୀର ପରିଖା
ଜାଗ୍ରତ ପ୍ରହରୀ କି ସେ ?

ଯକ୍ଷ ନୃପତିର ମାୟା ପୁରୀ ଶିରୀ
ଜନ ମନେ ଜନମାଏ,
ଗହଳ କାନନ ଶ୍ୟାମ ଲତା ବେଣୀ
କଟି ସରି ଘେରିଥାଏ ।

ଅଭିରାମ ନାମେ କଳିଙ୍ଗ କିଶୋର
ସେ ଦୁର୍ଗର ଅଧୀଶ୍ବର,
ବଳବୀର୍ଯ୍ୟେ ବଳୀ, ଅତିପ୍ରିୟ ତେଣୁ
ରାଜ-ସେନାପତିଙ୍କର ।

ସଇନ ଗୁଳନେ ଶୃଙ୍ଖଳା ରକ୍ଷଣେ
କୁହେ ନୀତି ବିଚକ୍ଷଣ,
ଯୁବା ଅଭିରାମ ଧୁରନ୍ଧର ଅତି
ରାଜଭକ୍ତ ପରାୟଣ ।

ଅରି ଆକ୍ରମଣ ଅଶୁଭ ମୁହୂର୍ତ୍ତି
ଜଗି ସଦା ତତପର,
ସଂବାଦ ବହନେ ଜଳବକ୍ଷେ ତରୀ
ଥିଲେ ଗୁପ୍ତ ବନଚର ।

ନିଶା ଅନ୍ତେ ଦିନେ ଗୁପ୍ତଚର କହେ—
"ମହାନଦୀ ପର ପାରେ,
ତୁର୍କୀ ଛାଉଣୀ ପରି ଦିଶେ ଦୂରୁ
ବହୁ ହସ୍ତୀ ଅଶ୍ୱ ଚରେ"

ଦଇବେ ସେଦିନ ରାଜ ଦରବାରୁ
ସାବଧାନୀ ଲେଖା ପାଇ,
ବୀର ଅଭିରାମ ଦୁର୍ଗ ରକ୍ଷୀ ସେନା
ସଜାଇ ରହିଲେ ରୁହିଁ ।

ଅମା ନିଶୀଥରେ ଶତ ତରୀ ବାହି
ହୋଇ ମହାନଦୀ ପାର,
ଯବନ ବାହିନୀ ଦୁର୍ଗ ସନ୍ନିକଟ
ଅରଣ୍ୟେ କଲେ ବିସ୍ତାର ।

"ଏକ ପରେ ଏକ ଗଭୀର ପରିଖା
ଲଙ୍ଘି ଯାଅ ଦୁର୍ଗ ଘେର,
ଅଜାଣତେ କର ଦୁର୍ଗ ଆକ୍ରମଣ
ବଜାଅ ବିଜୟ ଭେରୀ"

ରଣ ଗୁରୁ ଶିଙ୍ଘା ବାଜି ଜଣାଇଲା
ଦୁର୍ଗ ରକ୍ଷୀଏ ଜାଗ୍ରତ,
ତୁର୍କୀ ସେନାପତି ଆଦେଶେ ସେନାଏଁ
ଗଡ଼ଦ୍ୱାରେ ଉପଗତ ।

ରଣ ଉନ୍ମାଦନା ଜଗାଇଲେ ଜାଗି
ପୁରୋଭାଗେ ଅଭିରାମ,
ନାଚିଲା ବରଛି, ଉଲଙ୍ଗ କୃପାଣ
ତ୍ରି ଦିବସ ଅବିରାମ ।

ଗଡ଼ ଛାଡ଼ି ଗଲେ ପରାଜୟ ମାନି
ତିନି ଦିନେ ଅଭିରାମ,
ଦୀନ୍ ଦୀନ୍ ରବେ କମ୍ପିଲା ଗଗନ
ଯବନ ସଫଳ କାମ ।

ଉଲ୍ଲାସେ ତୋଧାନ ଅର୍ଦ୍ଧଚନ୍ଦ୍ର ଧ୍ୱଜା
ବାନ୍ଧି ଦେଲେ ଦୁର୍ଗ ଶିରେ,
ଆଦେଶିଲେ ଲୁଟି ଇଚ୍ଛାମତେ ଗଡ଼
ଏଥର ତୁର୍କୀ ବୀରେ ।

ନାହିଁ ଘରଦ୍ୱାର ନାହିଁ ତରୁଲତା
ନାହିଁ ଖାଦ୍ୟ କଣିକାଏ,
ଦେଖିଲା ଯବନ ଭସ୍ମୀଭୂତ ଦୁର୍ଗ
ଉପହାସେ ସତେ ଗୃହେଁ ।

ମରିଗଲ ମନ, ଯବନ ବାହିନୀ
ଶୂନ୍ୟ ଦୁର୍ଗ ଦେଖି ଖରେ,
ସ୍ୱପ୍ନେ ଅବଜ୍ଞରେ ପାଡ଼ିଲେ ଛାଉଣୀ
ମହାନଦୀ ବାଲି ପରେ ।

ଦଳ ଦୁଇଗୁଣ ବିଶ୍ରାମି ସେନାଏଁ
ଆକ୍ରମିବେ ଯାଜପୁର,
ଜାଣିବେ ଉତ୍କଳ ଭାଗ୍ୟ ସୁପ୍ରସନ୍ନ
ପଥ ଶତ୍ରୁ ହେଲା ଦୂର

ଯବନ ବାହିନୀ ସଂଖ୍ୟାରେ ଅଧିକ
ଦେଖି ବୀର ଅଭିରାମ,
ସାର୍ଦ୍ଧ ଦୁଇଶତ ସେନା ମାତ୍ର ନେଇ
ଦେଖି ଥିଲେ ଗିରି ଧାମ ।

କଟକ ଜାଳାଇ ଗୁପତ ସୁଡ଼ଙ୍ଗ
ପଥେ ଯାଇ ଗିରି ତଳେ,
ଲକ୍ଷ୍ୟ କରୁଥିଲେ ଯବନ ସେନାର
ଜୟୋଲ୍ଲାସ କୁତୁହଳେ ।

ପ୍ରମୋଦ ମଗନ ତୁର୍ଘାନ ସେନାନୀ
ନାହିଁ ଲବେ ଭୟ ଆଉ,
ଦେଖି ସଜ ହେଲେ ବୀର ଅଭିରାମ
ସାଧିବାକୁ ଏବେ ଦାଉ ।

ନିଶି ଅନ୍ଧକାରେ ବେତସ ବନରୁ
ଘୋର କାଳାନ୍ତକ ସମ,
କଲେ ଆକ୍ରମଣ ଘେରି ଚଉପାଶ
କାହିଁ କେ ରକ୍ଷଣେ କ୍ଷମ ?

ଲୁଟି ଗଜ ଅଶ୍ବ ରୁଣ୍ଡ କଲେ ମୁଣ୍ଡ
ଯା' ଆଗେ ପଡ଼ିଲା ଯେହୁ,
ଡର ନ ସହିଲା ଯବନ ବାହିନୀ
ଛତ୍ରଭଙ୍ଗ ଦେଉ ଦେଉ ।

ଭୁଘାନ ମନରେ ଭାବ ଥିଲା ସିନା
ଦୁର୍ଗରକ୍ଷୀ ଘରଘାର,
ପଥବାଧା ଗଲା ଯାଜପୁର ଯାଏ
ନିଧୋକ ହେଲା ଏଥର ।

ପଳାଉ ପଳାଉ ତୋଗ୍ରଲ କହଇ
ଦୂର ତ ଯାଜ ନଗର,
କେତେ ବେଗେ କାହୁଁ ସେନାଏଁ ଅଇଲେ
ନରସିଂହ ଯାଦୁକର ।

"ଆଶ୍ବିନର ଶେଷ ଶନିବାର ଦିନ
ତୁର୍କୀ କଲେ ଆକ୍ରମଣ,
ହାଣ ଖାଇ ଗଲେ" ବୋଲି ଅଭିଯାନ
ଲେଖରେ କଲେ ଇଶାଣ ।

ରାଜ ଦରବାରେ ଚହଳ ପଡ଼ିଲା
ଉତ୍ସବେ ଭାସିଲ ପୁରୀ,
ବୀର ଅଭିରାମ ଯଶ ଅବିରାମ
ଭରିଲା ମୁଖେ ସବୁରି ।

—ତିନି—

ହାୟ ସେ ତୋଘାନ ଦିଲ୍ଲୀ ଦରବାରେ
କାନ୍ଦି ଲେଖେ ଜାହାଁପନା,
ତୁମ୍ଭ ପରା ପ୍ରଭୁଙ୍କୁ ଥାଉଁ ସରିଗଲା
ଲଭେ ଏ ନଫରେ ଅନାଁ ।

ଉତ୍କଳ ନରେଶ ଯାଜପୁରେ ଥାଏ
ନରସିଂହ ତାର ନାମ,
ହରାଇଲା ମୋତେ ସଇନୀ ସାଜୁଛି
ଦିଲ୍ଲୀ ଆକ୍ରମଣ କାମ ।

ବହୁ ଭେଟ ନେଇ ତୁଘାନ ପକ୍ଷରୁ
ମନ୍ତ୍ରୀ କାଜୀ ଦୁଇ ଜଣ—
ଦିଲ୍ଲୀରେ କହିଲେ "ସାହାଯ୍ୟ ନ ଦେଲେ
ଶେଷ ଆମ ରାଜ୍ୟ ପଣ ।

ଯାଜପୁର ଗଡ଼ ଚଢ଼ାଉ କରିବା
ବାହିନୀ ହୋଇଲେ ରୁଣ୍ଡ,
ପଦାତଳେ ଆଣି ଅରପିବୁଁ କଣ୍ଠେ
ନରସିଂହ କଟାମୁଣ୍ଡ ।

ଦିଲ୍ଲୀ ବାଦସାହ ସେ କାଳରେ ଥିଲେ
ସମ୍ରାଟ ଆଲ୍ଲାଉଦ୍ଦିନ,
ପ୍ରଧାନ ଉଜୀର ଦେଲେ ପରାମର୍ଶ
"ଉଚିତ ସାହାଯ୍ୟ ଦାନ ।"

ଚରମୁଖୁଁ ପୁଣି ସଂବାଦ ପାଇଲେ
ଉତ୍କଳର ନରପତି,
ବାଦସାହୀ ସେନା ତୁଘାନ ସହିତେ
ସ୍ଥିର କଲେ ଆକ୍ରମଣ ।

ପରାମର୍ଶ ଦେଲେ ସଚିବ ଗୋବିନ୍ଦ
ଦିଲ୍ଲୀ ସେନା ଆସୁ ଆସୁ,
ଆମ ସେନାଦଳ ବେଗେ ଯାଇ ଅଗେ
ତୁଘାନ ଗଡ଼ରେ ଝାସୁ ।

କଥାମତେ କାର୍ଯ୍ୟ, ବୀର ନରସିଂହ
ବାହିନୀ ଚଳାଇ ଗଲେ,
ଉତ୍କଳ ରମଣୀ ମାଲା ଦୀପ ଦେଇ
ବନ୍ଦାଇଲେ ଦଳେ ଦଳେ ।

ମଙ୍ଗଳା ଚରଣେ ଲଙ୍ଘା ଦୁର୍ଗ ଯାଗ
ଯଜ୍ଞ-ଶୁଭ ମନାସିଲେ,
ବାଜ ବାଜନ୍ତ୍ରୀ ବଢ଼-କାଠ ଭେରୀ
ଘାଇକାଠି ପଲିଗଲେ ।

ବାଦସାହୀ ଚମୂ ଲକ୍ଷ୍ମଣାବତୀରେ
ପ୍ରବେଶ ହେବା ଆଗେ,
ଝିଲ୍ଲି ଭେରୀ ସଘନେ ବାଜିଲା
ଦୁର୍ଗର ଚଉଭାଗେ ।

ପ୍ରମାଦ ଗଣିଲେ ନବାବ ତୁଘାନ
ମନ୍ତ୍ରୀ ତ ପାଖେ ନାହିଁ;
ବାଦଶାହ ଦେବେ ସାହାଯ୍ୟ, ଶୁଣିଛି,
ସେ ଅବା ଆସିଲେ କାହିଁ ?

ଏବେର ନୁହେଁ, ଦୁଇ ଦୁଇ ଥର ଲଢ଼ି
ଶୁଣିଛି ଓଡ଼ିଶା ମାଡ଼,
ସାଗର ପ୍ରମାଣ ଆସିଛନ୍ତି ମାଡ଼ି
ମାନିବେ ବ ଗଡ଼ ବାଡ଼ ?

ଜାଣିଛି ନବାବ ଉତ୍କଳୀ ପାଇକେ
ଲଢ଼ିବେ ମରିବା ଯାଏ,
ପଛଘୁଞ୍ଚା ତାଙ୍କ ଜନମ ଜାତକେ
ବହୁତ ଲହୁ ନ ଥାଏ ।

ଜାଣିଛନ୍ତି ସେ, ରକ୍ଷା ନାହିଁ ଆଉ ତାର
ବଳେ ନଳେ ନରସିଂହ,
ଶୃଙ୍ଗ ଅଛି ବୋଲି କୁରଙ୍ଗରେ ଦେଖି
ଡରିଯିବ କାହିଁ ସିଂହ ?

ବଜ୍ର ବଜ୍ର କେତେ ତୁରଙ୍ଗ ସଇନ
ଧେନି ଲଢେ ପରଚଣ୍ଡ,
ଜନ୍ମଦ ପାଇକେ ରେ ରେକାର କରି
କଟେଲ୍ ଅତି ଲଣ୍ଡଭଣ୍ଡ ।

ବାହିନୀ ସମ୍ମୁଖେ ବୀର ନରସିଂହ
କର-ମୁଷ୍ଟେ ଅସି ଧରି,
କହନ୍ତି "ସେନାଏଁ, କି ଶୁଣୁଛ ଆଜି ?
ଗରଜି ଆସଇ ଅରି ।

ଅଗ୍ନି-ପରୀକ୍ଷାରେ ଚିହ୍ନ ପଡ଼ି ସିନା
ପିତଳ ସୁନାର ଭାଉ,
ବୀର ଜାତି ବୋଲି ଯଶ ରଖ, ଆସ,
ଥାଉ ଅବା ଜୀବ ଯାଉ ।

ଅରି ମରଦନେ ବୀର ମରି ଧନେ
ଜୀଇବେ ଜୀଇଲା ପରି,
ଧିକ ସେ ଶତାୟୁ— ଭୀରୁ, ଜୀଇଥାଉ
ନିତି ଗତାୟୁଷ ସରି ।

ସ୍ୱାଧୀନ ଉତ୍କଳ ଗୌରବ କେତନ
ହେବ ଯେବେ ସତେ ନତ,
ଶୃଙ୍ଖଳ-ଆବଦ୍ଧ ଶ୍ୱାପଦ ସମାନ
ମଣିବ କି କୃତକୃତ୍ୟ ?

ଶଙ୍ଖ ଶିଙ୍ଘା ରବେ ଦିଅ ପ୍ରତିଧ୍ୱନି
ଗଡ଼ରେ ପଶ ହସାଇ,
ଜୟ ବିରଜାଈ ଜୟ ଜଗନ୍ନାଥ
ସାହା ସେ ଉତ୍କଳ-ସାଇଁ ।

ଅବନତ କର ଯବନ କେତନ;
ଅର୍ଦ୍ଧଚନ୍ଦ୍ର ବକ୍ଷେ ଧରେ,
ସାମ୍ୟ, ମୈତ୍ରୀ ଜଗନ୍ନାଥ ବାନା
ଉଡ଼ାଅ ବାୟୁ ଲହରେ ।

ଗରଜି ଉଠିଲା ବିରାଟ ବାହିନୀ
କଣ୍ଠେ 'ବିରଜାଈ' ନାଦ,
ଟଳମଳ ହେଲା ଦୁର୍ଗ ପ୍ରାଚୀର
ଯବନ ଗଣେ ପ୍ରମାଦ ।

ମରଣ-କାମୁଡ଼ା ଦିଏ ହିଂସ୍ର ଜୀବ
ଯନ୍ତ୍ରାରେ ବାଜିଲେ ଭାଳ,
ରୁନ୍ଧି ହୋଇ ଦୁର୍ଗେ — ଉଦ୍ଧାନ ତେସନ
ଗର୍ଜ୍ଜନ ଛଡ଼େ ଘାଳ ।

ଦିନେ ସଂଧ୍ୟାରେ        ସ୍ତିମିତ ଆଲୋକେ
ଘୋଡ଼ାରେ ଚଢ଼ି ଭୂପାନ,
ସ୍ୱଳ୍ପ ସୈନିକ        ଘେନି ଝାମ୍ପ ଦେଲ
ବଞ୍ଚାଇବା ପାଇଁ ମାନ ।

ବିପୁଳ ଉତ୍କଳ—        ବାହିନୀ ମଧ୍ୟରେ
ବୀର ଦର୍ପରେ ଲଢ଼ି,
ଅନ୍ଧାରେ କାହିଁ        ଗଡ଼ ଛାଡ଼ିଗଲ
ପଳାଇ ଅଶ୍ୱ ଚଢ଼ି ।

ଅର୍ଗଲ ହୀନ—        ଗଡ଼ରେ ପଶିଲେ
ଉତ୍କଳ ବୀର ସେନା,
ଲକ୍ଷ୍ମଣାବତୀ—        ରାଜଲକ୍ଷ୍ମୀର
ଆରତି କଲେ ସେ ଘେନା ।

ପ୍ରାସାଦ ଚୂଡ଼ାରେ        ଗରବେ ଉଡ଼ିଲା
ଗଙ୍ଗ ବିଜୟ ଧ୍ୱଜା,
ଜୟ ନରସିଂହ        ଗୌଡ଼ ବିଜୟୀ
ଚଉଦିଗେ ବାଜେ ବାଜା ।

ବାହୁଡ଼ିଲେ ବୁକୁ        ଫୁଲାଇ ପାଇକେ
ଅରି ମୁଖେ ବୋଳି କାଳି,
ହୁଳହୁଳି ଦେଇ        କୁସୁମ ଚନ୍ଦନେ
ବନ୍ଦାଇଲେ ପୁର ବାଳୀ ।

'ଜୟ ଜଗନ୍ନାଥ !' 'ଜୟ ବିରଜାଈ !'
ଶବଦେ କମ୍ପିଲ ଧରା,
ବନ୍ଦୀ ଗାଇଲା 'ଜୟ ନରସିଂହ'—
ଉତ୍କଳ ଶିର-ଝରା ।

———

# ଅଷ୍ଟ ବଉ

ଶ୍ରୀମନ୍ଦିରେ, ସଂଧ୍ୟାକାଳେ, ବୃଦ୍ଧ ବଟ ତଳେ,
ପ୍ରବେଶ ହେଲେଣି ଏବେ ଶ୍ରୋତା ଦଳେ ଦଳେ ।
ବରଷେ ଶ୍ରାବଣ ଘନ, ବିଜୁଳୀ ଚମକ,
ତହିଁ ପୁଣି ରହି ରହି ବଜ୍ରର ଧମକ ।
ବାରି ଧାର ନୁହେ କ୍ଷାନ୍ତ, ଝରେ ଅବିରାମ,
ତପସ୍ୱୀଏ ଯଥା, ହେବା ଧାଏ ମୁକ୍ତି-କାମ—
ନିରବଧି ନ ତେଜନ୍ତି ମନ୍ତ୍ର ଉଚ୍ଚାରଣ;
ସେହି ମତ, ନାହିଁ ଶ୍ରାନ୍ତି, ନାହିଁ ଛା ବିଶ୍ରାମ ।
ଘନ ଘଟାଚ୍ଛନ୍ନ ମେଘ, ନାହିଁ ଚନ୍ଦ୍ର ରେଖା,
ପଙ୍କିଲ ଜୀବନେ କାହିଁ ପୁଣ୍ୟ ତେଜ ଦେଖା ?
ଖଦ୍ୟୋତ ଉଦ୍ୟତ ଗିରି-ଶିର ଆରୋହଣେ,
ପାଶୋରାଇ ଦେବେ ଅବା ଶଶାଙ୍କ କିରଣେ !

ଧନ୍ୟ ସେ ସାହସ ! ଧନ୍ୟ ବୋଲିବା ଏ ଲକ୍ଷ୍ୟ !
ଲକ୍ଷ ହେଲେ ତୁଣ୍ଡ, ସେ କି ଶତୀ ସମକକ୍ଷ ?
କ୍ଷୀଣ ଗ୍ରାମ ପଥ—ଜଳପୂର୍ଣ୍ଣ ଠାବେ ଠାବେ,
ଧୈବତ ସାଧଇ ବୃଦ୍ଧ-ଭେକ ଅନୁରାଗେ ।
ନୀରବ ଏ ପଥ, ମୌନୀ ଶ୍ମଶାନ ଯେପରି,
ମୌନେ ମନ୍ତ୍ର ସାଧେ ଯୁଗ ଯୁଗାନ୍ତର ଧରି ।
ନ ମାନି ଦୁର୍ଦ୍ଦିନ ମେଘ, ଝଡ଼ି, ବର୍ଷା ଝଡ଼,
ଅକାଳେ ଅଶୀତି-ବୃଦ୍ଧା ଯାଉଛନ୍ତି ଚଳି ।
"ଜଗନ୍ନାଥ ଜଗନ୍ନାଥ, ପତିତ ପାବନ,"
ନାମ ଉଚ୍ଚାରଣ ଭିନ୍ନ ନାହିଁ ପଥେ ଧ୍ୟାନ ।
ଶ୍ରୀ ପୁରୁଷୋତ୍ତମେ ପାଦ ଯନ୍ତ୍ରଭଳି ଚଳେ,
ଶୁଭ୍ର କେଶ ଧୋଇ ଧାର ଧାର ବାରି ଝରେ ।
ମଧ୍ୟେ ମଧ୍ୟେ କହ୍ନୁ-କଣ୍ଠ କାଳ-ପେଚକର,
ତନ୍ଦ୍ରାଭଙ୍ଗ କରୁଥାଇ ନିକଟ ବନର ।
ଅଖଣ୍ଡ ସ୍ୱର ସାଧଇ ଝିଂକାରି ଝଂକାର,
ଅହ ତୁଣ୍ଡୁ ଭେକ, ଦୁଃଖ ଜଣାଏଁ ହକାର ।
'ହୁକ୍‌କା ହୁଆ ହୁଆ' ଡାକ ଶିଆଳ ଧାଇଁଛି,
ଦୂରେ କାହିଁ ଭୋଜନର ସଂଧାନ ପାଇଛି ।
ଧ୍ୟାନ ନାହିଁ ଆନେ, ଦଶେ, ଅସରନ୍ତି ପଥ,
ଦର୍ଶନ କରିବେ କେବେ ପ୍ରଭୁ ଜଗନ୍ନାଥ ।
ବସିତ ଯିବେଣି ଆସି ଭାଗବତ ପାଠେ—
ପୁରାଣ ପଣ୍ଡାଏ, ଛୁଟୁ, ଛୁଟୁ, ପହୁଞ୍ଚିବ ମଠେ ।
ଭାଲୁଛନ୍ତି ବୁଢ଼ୀ, ଆସେ ମନେ ବଡ଼ ଗ୍ଲାନି—
ଏ କି କଲ ଜଗନ୍ନାଥ ? ଧର୍ମେ ହେଲ ହାନି ।

ଲକ୍ଷ ନାହିଁ ଚତୁର୍ଦ୍ଦିଗେ ଘଟେ କି ଘଟଣା,
ଗ୍ଳଲଛନ୍ତି ବୁଢ଼ା ପୁରୁଷୋତ୍ତମ ପାଠଣା ।
ପ୍ରବେଶି ଦେଖିଲେ ଯାଇ ବଟ ବୃକ୍ଷତଳେ—
ସ୍ତିମିତ ପ୍ରଦୀପ ଏକ ମିଞ୍ଜି ମିଞ୍ଜି ଜଳେ ।
ପୁରାଣ-ପଣ୍ଡାଏ ଆଜ ଗମ୍ଭୀର ବଦନ,
ଆରମ୍ଭ ତ ହୋଇ ନାହିଁ ପୁରାଣ ପଠନ,
"ନ ଅଣିଛୁ ଦକ୍ଷିଣା ଯେ ଫେରଯାଅ ଘରେ,
ଭାଗବତ ଶୁଣାଇବ ବସି ମାଗଣାରେ ?
ସଂସ୍କୃତକୁ ବୁଝାଇବ ପରାକୃତେ ମୁହିଁ,
କହି କହି ଅସ୍ଥିଶିର ହୋଇଯାଏ ଦୁହିଁ,
ଦକ୍ଷିଣା କଥା ଯାହାର ମନେ ପଡ଼ୁ ନାହିଁ,
ବାହାର ଯାଅନ୍ତୁ ଥିଲେ ଅଦଆ କେ କାହିଁ ।"
ବିନୋଦି କହିଲେ ବୁଢ଼ା ପଣ୍ଡିତେ ଏସନ,
"ପୁନିକୁ କହ ମୁଁ କାଲି ଆଣି ଦେବ ଧନ ।
ବହୁଦୂରୁ ଆସିଛୁ ମୁଁ ନ କହ ଏମନ୍ତ—
ସମସ୍ତ ମାଗୁଛୁ ଖାଲି କାଲି ପରଯନ୍ତ ।"
"ଉତ୍ତମ ! ଦକ୍ଷିଣା ମୋର ଆଣି ଦେଲେ କାଲି,
ପୁରାଣ ଶୁଣିବ ଆସି, ଆଜ ଯାଅ ଗ୍ଳଲି ।
ମାଗିବା ଯାଏ ତ ଗଲା ମୁଖେ ନାହିଁ ଲଜ୍ଜା"
କହିଲେ ପଣ୍ଡିତେ—"ନୁହେଁ ମୁଁ ତ ତୁମ୍ଭ ପ୍ରଜା ।
କଥା ମାନି ହେବେ ତୁମ୍ଭେ ସଭାରୁ ନ ଯିବ,
ଅଜି ଏ ପୁରାଣ-ପୋଥି ତୋର ନ ଫିଟିବ ।"
ଶ୍ରୋତା କୋଳାହଳେ ସଭା ପଡ଼ିଲା ତ ଭାଜି,
ମସ୍ତକେ ଛିଣ୍ଡିଲା ଅବା ଶତବଜ୍ର ଆଜି—

ବାହୁଡ଼ିଲେ ବୁଢ଼ା, ଝରେ ଶୋକ ଅଶ୍ରୁ ଧାର,
ଗର୍ବରେ ପୁରାଣ ପଣ୍ଡା ନ କଲେ ପଚାର।
ଖଣ୍ଡେ ଦୂରୁ ଦେଖୁଥିଲେ ଦାସ ଦିବାକର,
ଝିଙ୍କାସ ବଚନେ ଭାଙ୍ଗି ପଡ଼ଇ ଅନ୍ତର ।
ସେ ଯେ ଜଗନ୍ନାଥ ସଖା, ଶିଷ୍ୟ, ଅନୁଚର,
ଫାଟିଯାଏ ଛାତି ଦେଖି ପଣ୍ଡିତ-ଆଗ୍ରହ ।
ବୁଢ଼ା ପଛେ ପଛେ ଗଲେ ପଥ ଅନୁସରି,
ଶୁଣୁଥିଲା ତାଙ୍କ କାନ "ଏ କି କଲ ହରି" ?
ପୁଣି ସେହି ପଥ—ସେହି ବିଜୁଳି ନର୍ତ୍ତନ,
ସେହି ଭେକ ଡାକ—ସେହି ଝିଂକାରୀର ସ୍ୱନ
ଘନ ଘୋର ଅନ୍ଧକାର, ବଜ୍ର ଗରଜନ,
ନୀରବେ ସେପଥେ, ଚାଲିଛନ୍ତି ବେନିଜନ ।
ନ ଜାଣନ୍ତି ବୁଢ଼ା, ତାଙ୍କ ପଛେ ଦିବାକର,—
ଆସନ୍ତି ନ ମାନି ଘୋର ଝଡ଼, ବର୍ଷା ଜଳ ।
କପାଟେ ମାରିଲେ କର, ଡାକି ଜଗନ୍ନାଥ ।
ଆସି ପ୍ରଶ୍ନ କଲେ ସୁତ, "ଏ କି ହେଲା ମାଉ !
ଏଡ଼େ ବେଗେ ମନ୍ଦିରରୁ ବାହୁଡ଼ି ଅସିଲ,
ପୁରାଣ ସଭାରେ ଆଜ କିପାଁ ନ ବସିଲ ?"
ପ୍ରତ୍ୟୁତ୍ତର ନାହିଁ, ମାତା ଚାଲିଗଲେ ଧୀରେ,
ଚିନ୍ତା-କୀଟ ଆକ୍ରମିଲ ଜଗନ୍ନାଥ ଶିରେ,—
କି ହେଲା, କାହିଁକି ମାତା ଗମ୍ଭୀର ଏସନ,
ଦିବାକର ଦାସେ ତହୁଁ କହିଲେ ବଚନ ।
"ଜାଣି ସେ ନାହାନ୍ତି ମୁହିଁ ପଛରେ ଆସିଛି,
ପୁରାଣ ପୀଠର ଚର୍ଚ୍ଚା ସବୁ ମୁଁ ଶୁଣିଛି, ।"

"ତୁମ୍ଭେ ଦିବାକର, ସତେ ଅଛିଛ ଅନ୍ଧାରେ,
ପ୍ରେରିଣ ମୋ ନ ରହେ, କହ କି ହେଲା ସେଠାରେ ।"
ଜଗନ୍ନାଥ ପଚାରିଲେ ଧରି ତାଙ୍କ କର,
କହେ ଦିବାକର, "ବନ୍ଧୁ ! ଜନମ ତୁମ୍ଭର;
ଜାଣିଛ ତ ସଂସ୍କୃତରେ ଲେଖା ଶାସ୍ତ୍ରମାନ,
କିପରି ବୁଝିବେ ନାହିଁ, ଅପଣ୍ଡିତ ଜନ ?
ତେଣୁ ସିନା ଘୋର ବର୍ଷା, ବିଜୁଳି ନ ମାନି,
ମନ୍ଦରେ ପୁରାଣ ପାଠେ ଯାଆନ୍ତି ଜନନୀ ?
ମାଗିଲେ ଦକ୍ଷିଣା ତାଙ୍କୁ, ନାହିଁ ତ କଉଡ଼ି,
ପୁରାଣ ପଣ୍ଡାଏ ଦେଇ ଅଛନ୍ତି ଧଉଡ଼ି ।
ଅପମାନେ ଫେରିଛନ୍ତି ନୁଆଇଁ ସେ ମଥା,
କର ଅନୁମାନ ଲାଗିଥିବ କେତେ ବ୍ୟଥା ।
ପଣ୍ଡିତ ପଣରେ ତୁମ୍ଭ ସରି କେହି ନାହିଁ,
ଦେଖୁଥିବ ଏ ଅନୀତ ଜଳ ଜଳ ଚାହିଁ ?
ଶକ୍ତି ଯେବେ ଅଛି ଦେହେ, ଅଛି କୁଳମାନ,
ପ୍ରତିଶୋଧ ନେବ ତୁମ୍ଭେ ମନ କର ଠାଣି ।
ଲେଖ ବସି ଭାଗବତ ଉତ୍କଳ ଭାଷାରେ,
ନ ବୁଝି କେ ନ ଫେରିବେ ଆଉ ନିରାଶାରେ ।"
"ଅସମ୍ଭବ କହିଲ ତ ତୁମ୍ଭେ ଦିବାକର,
କେତେ ବଡ଼ ଶକ୍ତି କାହୁଁ ଆସିବ ମୋହର ?
ଦେବ-ଭାଷା ଭାଗବତ ମହାପୁଣ୍ୟ ଗ୍ରନ୍ଥ,
ପଦ୍ୟାର ରଚିବା ପାଇଁ ମୁଁ କି ସମରଥ ?"
ଜଗନ୍ନାଥ ସୁମରିଲେ 'ଜଗନ୍ନାଥ' ନାମ—
ଭାଷେ ଦିବାକର "ନିଶ୍ଚେ ହେବ ପୂର୍ଣ୍ଣକାମ ।

ଆରମ୍ଭିବ ଆଜ ତୁମ୍ଭେ ଗ୍ରନ୍ଥର ଲିଖନ,
ଆଶୀର୍ବାଦ ଦେବ ଦାସେ ! 'ମାତୃ-ଅପମାନ !'
ଗୋବିନ୍ଦ ପଦ୍ମରେ ଧ୍ୟାନ ଦେଲେ ଜଗନ୍ନାଥ,
ଦୃଶ୍ୟ ହେଲା ପଦ, ଲେଖିଲେ ସେ ଭାଗବତ ।
ଗ୍ରାମେ ଗ୍ରାମେ ଠାବେ ଠାବେ ଭାଗବତ ଖ୍ୟାତି,
ଶ୍ରବଣେ, ପଠନେ ନିତ୍ୟ ରତ ନାନା ଜାତି ।
ବର୍ଣ୍ଣ-ବିଗ୍ରହର ତହିଁ ଠାବ ନାହିଁ ଲବେ,
ଚୂର୍ଣ୍ଣ କରି ଦେଲା ଏବେ ପଣ୍ଡିତ ଗରବେ ।
ପୂର୍ଣ୍ଣ ହେଲା ତହିଁ ଦିବାକର ମନୋରଥ
ଅହଂମନ୍ୟ ପଣ୍ଡିତଙ୍କ ମଥା ହେଲା ନତ ।
କୁପିଲେ ପଣ୍ଡିତେ ଦେଖି ଦାସଙ୍କ ପ୍ରସାର,
କାହିଁ ଥିଲା 'ଭଗବାନ' ବଂଶେ କୁଳାଙ୍ଗାର ?
ପୁରାଣ-ପ୍ରସିଦ୍ଧ ପୁଣ୍ୟ ଗ୍ରନ୍ଥ ଭାଗବତ,
ଶୂଦ୍ରେ ତା' ପଢ଼ିବେ ? ଗଲା ଶାସ୍ତ୍ରର ମହତ୍ତ୍ୱ ।
ପ୍ରାକୃତେ ପଦ ରଚି ଜଗନ୍ନାଥ ଦାସ,
ବୋଲାଇବ ପରା ଅଭିନବ ବେଦ ବ୍ୟାସ ?"
ଈର୍ଷାରେ ପ୍ରଜ୍ୱଳି ଉଠେ ପଣ୍ଡିତଙ୍କ ପ୍ରାଣ;
ଛିଦ୍ର ଅନ୍ୱେଷଣେ ରତ ଦିବା କିବା ରାତ୍ର ।
ସରଳ ଶବ୍ଦ-ସଂହତି, ଶୈଳୀ ମନୋହର,
ଭାଗବତ ପଦ ସର୍ବେ କଲେ କଣ୍ଠହାର ।
କଥାଛଳେ କେ ବା କହିଦିଏ ପଦ ମାନ,
ମୁଖେ ମୁଖେ ଶୁଭେ ଜଗନ୍ନାଥ ଗୁଣଗାନ ।
ମଧୁକର, ବ୍ରହ୍ମର୍ଷି,—ପୃଥିବୀ ସଂପଦ,
ବାରି ସିନା ବରନିଏ, ଯେ ଯାହାର ଖାଦ୍ୟ !

କର୍ମେ ରତ କର୍ମୀ,—ସୃଷ୍ଟି-ବର୍ଦ୍ଧିତା ପରିଯେ,
ନିନ୍ଦା କି ପ୍ରଶଂସା ଲାଗି ଭ୍ରୂକ୍ଷେପ ନ ଥାଏ ।
ବସନ୍ତ ପରଶି ଧରା ସାରା ପୁଲକାଏ,
ବଂଶ-ତରୁ-ବଂଶ ପରା ପଲ୍ଲବ ଝରାଏ ?
ନିନ୍ଦୁକର ଠାବ ଯେବେ ନ ଥାନ୍ତା ଜଗତେ,
ସୃଷ୍ଟି-ଅଭିବୃଦ୍ଧି ଆଉ ଥାଆନ୍ତା କି ସତେ ?
ମତ୍ସରୀଏ ଥୋକେ ସିନା କଲେ ନିନ୍ଦାବାଦ,
ଜନେ ହେଲେ ରୁଚିକର ଭାଗବତ-ସ୍ୱାଦ ।

—o—

—ଦୁଇ—

ଛନ୍ଦ-ପଡ ରୂପେ ଅଖଣ୍ଡ ପ୍ରତାପେ,
ପ୍ରତାପରୁଦ୍ରଙ୍କ ଶାସନ ଚଳେ,
ବିବେକୀ, ପଣ୍ଡିତ ଶାସକ ସେକାଳେ
ରାୟ ରାମାନନ୍ଦ ଦକ୍ଷିଣାଞ୍ଚଳେ ।

ପ୍ରେମ ଭକ୍ତିବଳେ ଭସାଇ ଉତ୍କଳେ
କୀର୍ତ୍ତନ ଛଳରେ ରସ ପରଶି,
ତେଜି ନବଦ୍ୱୀପ, ଶ୍ରୀ ପୁରୁଷୋତ୍ତମେ
ଶ୍ରୀଚୈତନ୍ୟ ଦେବ ପ୍ରବେଶ ଆସି ।

ଲୋକ ମୁଖେ ଡର,                    ଲୋକ ମୁଖେ ମର,
ସେହି ଲୋକ ମୁଖେ ପଡ଼ନ୍ତି ହୁର,
ଗଉର-ଗୋବିନ୍ଦ,                    ଅଭିନ୍ନ ମୂରତି,
କଳିରେ ପୂରବ ବାଞ୍ଛା ସବୁର ।

ନାହିଁ ଭେଦ ଜ୍ଞାନ,                    କି ଜ୍ଞାନ, ଅଜ୍ଞାନ
ପ୍ରଭୁ ପାଶେ ନାହିଁ ଭେଦ ବିଗ୍ରହ
ନାହିଁ ଜାତି ଭେଦ,                    ଉଚ୍ଚ ନୀଚ ବାଦ—
ନାହିଁ ପାପୀ ତାପୀ କୁଳ-ଅଗ୍ରହ ।

'ହରେକୃଷ୍ଣ ରାମ'                    ନାମ ମହାମନ୍ତ୍ର
କୀର୍ତ୍ତନ ଛନ୍ଦରେ ମଧୁରେ ଗାଇ,
ଗୌର, ନିତ୍ୟାନନ୍ଦ                    ଉତ୍କଳ ଭୂଦେଶ
ପ୍ରେମ ବନ୍ୟା ରସେ ଦେଲେ ଭସାଇ ।

ଧନେ ରାମାନନ୍ଦ,                    ରମ୍ୟ ଅବସରେ
ଜଣା କଲେ ଗୌର-ଭକ୍ତି ଚରିତ,
ଧାର୍ମିକ ପ୍ରବର                    ବିଜ୍ଞ ନୃପବର
ଆଦେଶିଲେ ଭେଟିଲାଗି ତ୍ୱରିତ ।

ଶ୍ରୀଗୌରାଙ୍ଗ ପାଶୁଁ                    ଗୁରୁମନ୍ତ୍ର ଦୀକ୍ଷା,
ଘେନି ମହାରାଜ ହରଷ ମନ,
ଜଗନ୍ନାଥେ ବରି                    ଗୁରୁପଦେ ରାଣୀ—
ପୂଜା କଲେ ଦେଇ ଫୁଲ ଚନ୍ଦନ ।

ରାୟ ରାମାନନ୍ଦ ଛାମୁରେ ଜଣାନ୍ତି
"ନୁହେ ଜଗନ୍ନାଥ ସାମାନ୍ୟ ଜନ,
ଭାଗ୍ୟ ମଧ୍ୟେ ସାର ପଣ୍ଡିତ ପ୍ରବର,
ରାଧାରାଣୀ ଅଂଶ ହୋଇ ଜନମ।"

ପ୍ରସିଦ୍ଧ ସଂସ୍କୃତି ଭାଗବତ ଗ୍ରନ୍ଥ
ପରାକୃତ ପଦେ କରି ରଚନ,
ଓଳିଲେ ବଉରି ଜ୍ଞାନ ସୁଧା ବାରି
ମୋହୁଛନ୍ତି ଜ୍ଞାନୀ, ଅଜ୍ଞାନ ମନ।

ମଞ୍ଜୀ କରାଇଲେ ମନ୍ଦିର ବାହାରେ
ଉତ୍ତର ପଶ୍ଚିମେ ଦାସଙ୍କ ପାଇଁ,
ଦେବ ପୂଜା ଦାସେ ଯୋଗରେ ରହନ୍ତି
'ଓଡ଼ିଆ ମଠ' ତା' ନାମ ବୋଲାଇ।

ଦିନେ ଜଗନ୍ନାଥ ଶ୍ରୀମନ୍ଦିର ପୀଠେ
ଭାଗବତ କରୁ କରୁ ପଠନ,
ହୋଇ ଭକ୍ତବୃନ୍ଦ ଗୌର ନିତ୍ୟାନନ୍ଦ
କୃଷ୍ଣ ଗୁଣ ଗାଇ ଦେଲେ ଦର୍ଶନ।

ଭାଗବତ ତଥ୍ୟ ଦାସଙ୍କ ମୁଖରୁ
ଶୁଣି ଗୌରଚନ୍ଦ୍ର ହେଲେ ଚକିତ,
ଆଖି ଆଖି ଭେଟ— ହେଲା, ହୋଇ ଜନ
ପ୍ରେମରାଗେ ଭରି ଉଠିଲା ଚିତ୍ତ।

ଅପୂର୍ବ ମିଳନ ହେଉ ଶ୍ରୀମନ୍ଦରେ
'ହରିବୋଲ ଧ୍ୱନି' ପଡ଼େ ଉଚ୍ଛୁଳି,
ଗାଢ଼ ଆଲିଙ୍ଗନେ ମତ୍ତ ହେଲେ ଜନେ
ମର-ବାଟୀ ବୋଲି ଗଲେ କି ଭୁଲି ?

ଗଙ୍ଗା ଯମୁନାର ସଙ୍ଗମ ହେଲା କି
ସେହି ଦିନୁ ଦୁହେଁ ଦୁହିଁଙ୍କୁ ଚିହ୍ନି,
ରସରାଜ କୃଷ୍ଣ— ରସେ ବଢାଇଲେ
ଅବସର ହୀନ ଦିନ ଯାମିନୀ ।

ଶ୍ରୀକୃଷ୍ଣ ସେବାରେ ରତ ଗୌରଚନ୍ଦ୍ର
ଦିନେ ଦାସେ ତହିଁ ପ୍ରବେଶ ହେଲେ,
ଶିରରେ ମୁକୁଟ ଖଞ୍ଜିଦେଇ ପ୍ରଭୁ
ବନମାଳା ଲଗି ଦେଉଁ ସେ ଗଲେ;—

ଦେଖି ଜଗନ୍ନାଥ ବନଯେ ଭାଷିଲେ,
"ଏ କି କଲେ ପ୍ରଭୁ ଅବଧି ପଣ୍ଡା,
ଗଲେ ବନମାଳ ଲଗି ନ ବଢ଼ାଇ
ଶିରରେ ମୁକୁଟ ଦେଲେ ଆପଣ ?"

ଚେତନା ପଶିଲା ଆବେଶ ଛୁଟିଲା
ଚମକି ଗୌରାଙ୍ଗ ଦେଖିଲେ ପାଶେ,
ଉଭା ଜଗନ୍ନାଥ, ଭାଷିଲେ ଆଲିଙ୍ଗି,
"ଅତ ବଡ଼ ତୁମେ ଅଟ ହେ ଦାସେ" ।

"ଅତି ବଡ଼" ବୋଲି    ଡିଣ୍ଡିମ ବାଜିଲା
ଗୌର-ଭକ୍ତ ବୃନ୍ଦ ମନ-ପରଶେ—
ତେଜି ପ୍ରଭୁ-ସଙ୍ଗ    ଯାଜନଗ୍ରେ ଗଲେ
ଉତ୍କଳୀ-ଗୌରବ ହେବ ନୀରବେ ।

"ଏତେଦିନ ଧରି    ପାଦ ପୂଜା କରି
ଅତି ବଡ଼ ପୁଣି ହୋଇଲେ ଦାସେ,
ନ ପୁଣି ଆଉ କି    ଶୁଣିବାକୁ ଅଛି !
ମାନ ଯିବ ସିନା ଥିଲେ ଟି ପାଶେ ।"

ଖେଦ ଭରି ମନେ    ଜଗନ୍ନାଥ ଦିନେ
ଜଣା କଲେ "ପ୍ରଭୁ ଏ କି ବିଚାର ?
'ଅତି ବଡ଼' ନାମ    ମୋହୋଠାରୁ ଘେନ
ଅଣାଅ ବୈଷ୍ଣବେ, ଘଠାଅ ପ୍ରଚାର ।"

ଚିଠାଉ ସହିତେ    ଚର ବରଗିଲେ
ଜଗନ୍ନାଥ ହେଲେ ହରଷମନ,
ଫେରି ଆସି ଦୂତ    ନୀରବେ ଜଣାଏଁ
ରୁଷି ନ ଆସିଲେ ବୈଷ୍ଣବଗଣ ।

ଘରେ ଘରେ ରଟେ    ଜଗନ୍ନାଥ ନାମ
ବେଲହୁଁ ତ ଥିଲେ ପଣ୍ଡିତେ ଗଲ,
'ଅତିବଡ଼ ଦାସେ'    ପଦବୀ ଶ୍ରବଣେ
ଅନ୍ତର-ଗରଳ ହେଲା ପ୍ରବଳ ।

ଧନେ·ଅଚ୍ଛବଡ଼ୀ, ଅଛନ୍ତି ଘନ୍ଦୁଡ଼
ଭଜନ-କୁଟୀରେ ନିଶାର୍ଦ୍ଧ କାଳେ,
କେହି ପାଦୁଶରେ କେହି ସଖୀ ଘେରି
ଜାଗି ରହିଛନ୍ତି ପଦ ସେବାରେ ।

ମେଧା, ସୁମେଧା ସେ ବରଜ-ବାସିନୀ
ନାଡ ଅଶରୀରୀ ରୂପେ ଆସନ୍ତି—
ରାଈ-ଅଂଶ ଜାତ, ଦାସଙ୍କ ସେବାରେ
ସାରା ନିଶି ଦାସୀ ସରି ଖଟନ୍ତି ।

ଖଳ ଅସହଣୀ ପଣ୍ଡିତ ଜଣେ କେ
ଦେଖିଲେ ନୟନେ ଏ କ୍ରୀଡ଼ା ଗତି,
ସୁଯୋଗ ମିଳିଲା, ରାଜ-ସମୀପକୁ
ଗୋପନରେ ଜଣା କଲେ ଝଟତି ।

ନାକେ ମହାରାଜ ଆଖି ଆଗେ ଦେଖି
ଆଦେଶିଲେ "କଥା ନୁହେଁ ଅସାର,
ଧରି ଆଣି ଦାସେ ରଖ ବନ୍ଦୀ ଘରେ
କାଲି ଦରବାରେ ହେବ ବିଚାର ।"

ରଟିଗଲା ରାଜ୍ୟେ ପଲକ ମାତ୍ରକେ
ଅଚ୍ଛବଡ଼ୀଙ୍କର କଳଙ୍କ ଗାଥା,
ଦିବାକର ଭୁଲେ ଯେତେକ ଶିଷ୍ୟ ଥିଲେ
ବିଷାଦେ ନୁଆଁଇ ବସିଲେ ମଥା ।

ବଡ଼ରେ କଳଙ୍କ    ଝଡ଼ ବେଗେ ବଢ଼େ
ଏ ତ ଜଗତର ନିୟତ ଗତି,
ସାତ କଥା ଶୁଣି    ସତୀ ଭୁଲେ ପରି,
ମହାରାଜ କିସ, ଠେଲିବେ ଯତି ।

ଯରଧନ-ସଭା    ଗରଜି ଉଠୁଛି
ବିଜେ ମହାରାଜ ବିଚାରାସନେ,
ଘେରି ବସିଛନ୍ତି    ଚଉପାଶେ ପାତ୍ର,
ବକସି ଆବର ପଣ୍ଡିତ ଜନେ ।

ପ୍ରବେଶ ଏକାଳେ    ପ୍ରସନ୍ନ ବଦନେ
ଅତିବଡ଼ୀ ଦାସେ, ହେବ ବିଚାର,
ସାର୍ବଭୌମ ନାମେ    ଶାସ୍ତ୍ରଜ୍ଞ ପଣ୍ଡିତ
ଶ୍ରୀମୁଖ-ଆଦେଶ କଲେ ପ୍ରଚାର ।

"ଅଜ୍ଞଯାଏ ଥିଲେ    ଅନ୍ଧ ପରି ଲୋକେ
ଜାଣି ନ ଥିଲୁ କେ ଦାସ ଚରିତ୍ର,
ନିଶା ଅର୍ଦ୍ଧେ ବେଳ—    ରୂପସୀ ତରୁଣୀ
ଶଯ୍ୟା ପାଶେ—ଏ ତ ଦୃଶ୍ୟ ବିଚିତ୍ର !

ଧାର୍ମିକ-ପ୍ରବର    ବୋଲନ୍ତି ପରି ସେ
ଏ ରାଜସଭାରେ କହନ୍ତୁ—ସେ ତ
ସତ୍ୟ ଅବା ମିଥ୍ୟା    ଦାସଙ୍କ ମୁଖରୁ
ଖ୍ୟାତ, ଅପଖ୍ୟାତ ଶୁଣୁ ଜଗତ ।"

ହସି ଅଟ୍ଟବଡ଼ୀ ସଭାରେ ଭାଷିଲେ
"ନାରୀ ସେବା ନାରୀ କରେ ବଖାନେ,
ରାଣୀହଂସ ପୁରେ ଦେଖା ଅଛୁ କାହିଁ
ଗଠେଣୀ ପଣରେ—ପୁରୁଷ ଜଣେ ?"

ପ୍ରତ୍ୟୁତ୍ତର ଆସେ "ତୁମ୍ଭେ ତ ପୁରୁଷ,
ଆବର ସନ୍ନ୍ୟାସୀ ବୋଲ ଆପଣେ,
ବେନି ଯୁବାନାରୀ ପାଶେ ଥିବା କଥା
ମିଥ୍ୟା ହୋଇବ କି ଧର୍ମ ପ୍ରମାଣେ ?"

"ନୁହେଁ ମୁଁ ପୁରୁଷ, ନୁହେଁ ମୁହିଁ ନାରୀ;
ମୁଁ ପୁଣି ପୁରୁଷ, 'ମୁଁ ପୁଣି ନାରୀ,
ନାରୀ ଅଙ୍ଗ ଶୋଭା ନିରେଖୁ ଏ ସଭା
ଜଗନ୍ନାଥ ନୁହେଁ ବଞ୍ଚନାକାରୀ ।"

ବିସ୍ମୟ ଚକିତ ସଭା, ପୁଲକିତ
ଶିଷ୍ୟ ବର୍ଗ ମୋଦେ ମାରିଲେ ତାଳି,
ସିଂହାସନ ତେଜି ନିଜେ ମହାରାଜ
ଅଟ୍ଟବଡ଼ୀ ପଦେ ପଡ଼ିଲେ ଢଳି ।

"କ୍ଷମାକର ଘୋର ଅପରାଧ ମୋର"
କହୁ କହୁ ଦାସେ କାହାନ୍ତି ଆଉ ?
ଯୋଗସିଦ୍ଧ ଜନ **ପବିତ୍ର ଜୀବନ**
ସ୍ଥିର ଅହଂକାରୀ ସାଧୁହେବ ଦାଉ ?

ଅଛି ଯେଉଁଠି ସେହି ମନ୍ଦିରେ ବିଲୀନ
ଅଛି ବଡ଼ ଦାସେ ଦେଶ-ଗରବ,
ପ୍ରବଳ ସାଗର ସଫେନ ଲହରୀ
ଯହିଁ ରଚିଅଛି ସମାଧି-ଠାବ ।

---

# ମାଳତୀ

କଳିଙ୍ଗ ଉରେ ବିହାର କରେ ଚିତ୍ରୋତ୍ପଳା ସାର
ଧାର ତାର ହାର ସମ ଶୋହେ,
ଜଗତେ ଲଭି ପ୍ରସିଦ୍ଧି ବୋଲଏ ସେ ମହାନଦୀ
ସୁର, ନର ମୁନି ମନ ମୋହେ ।

ଲତିକା କୁସୁମ ଗଭା ଖଞ୍ଜି ଶିରୀ ମୁଖ ଶୋଭା
ହେରେ ନିତି ଜଳ-ଦରପଣେ—
କୁରଙ୍ଗୀ ଶାବକ ସଙ୍ଗେ ତୀର ବନେ ଖେଳେ ରଙ୍ଗେ
ଚିତ୍ତ ମୋର ଅଳିଅଳ ପଣେ ।

ମଧୁକର ଗୁଣୁ ଗୀତ ଶୁଣାଏ ଶ୍ରବଣେ ନିତ
ବଣମଲ୍ଲୀ କରେ ନୀରାଜନା,
କାଶ କୁସୁମ ଚାମର ଚାଳଇ ଦୋଳାଇ ଶିର
ସେବା ବିଧି ବିଧି-ସରଜନା ।

କାହିଁ ଭୀମ ଦନ୍ତାବଳ କମ୍ପୁଥାଇ ଦନ୍ତବଳ
ତୀର ତରୁ ଆଘାତେ ବିକଳ,
ଧିକ ! ସିନା ସେ ପରବ ଦେଖାଏ ଯହିଁ ଗରବ
ଅବଳାର ନିକଟେ ସବଳ ।

କାହିଁ ବା ତରଣୀ ବାହି ନାବିକ କଣ୍ଠେ ଶୁଭଇ
ଆହୁଲ ତାଳରେ "କାଇଫୁଲ",
କେବେ ତୁ ସ୍ମିତ ଫୁଲଉ ଉଚ୍ଛୁଳି ଚଳାବୁ କହୁ
"ପଥ ରୋଧେ କାହିଁକି ସେ କୂଳ ?"

ନ ଥିଲେ ସେ ଦୁହେଁ ସଖି, ତୋ ମହତ ଥାଆନ୍ତା କି
ଲଭନ୍ତୁ କି ସାଗର ସଙ୍ଗମ ?
ଅତ ଉଚ୍ଛୁଙ୍ଖଳେ ଧାଇଁ ପଡ଼ନ୍ତୁ ଅକୂଳେ ଯାଇ
କୂଳ ଜଗେ ତୋ କୁଳ-ଧରମ ।

ନିରେଖିବୁ ଏହି ଦେଶେ ଡର ଭୟ ନାହିଁ ଲେଶେ
ଛତ୍ରପତି ବୀର ରଣସଜ୍ଜା,
ବୋଇତ ଭସାଇ ତହିଁ ଜୟ କେତନ ଉଡ଼ାଇ
ବଜାଇ ଚଳଇ ବୀର ବାଜା ।

ଅତୀତ ହେଲଣି କାଳ       ଦୁଇଶ ବରଷ ତଳ,
ଉତ୍ତର ତୀରେ ତୋ ରାଜଗଡ଼,
ମନ୍ଦରଧର ଭୂପତି       ନରସିଂହପୁର ପତି
ଥିଲେ ବୀର ଅଭିମାନୀ ବଡ଼ ।

ବଳୀ ହୋଇ ଶାନ୍ତଧୀର,       ନୁଆଁଇବେ ନାହିଁ ଶିର
ପର ଛତ୍ର ତଳେ-ଏହି ପଣ,
ଧରମ ଛାଡ଼ିବେ ନାହିଁ,       ପରରାଜ୍ୟେ ସେ ଲୋଭାଇ
ନ ସହିବେ ଅରି ଆକ୍ରମଣ ।

ନରସିଂହପୁର ରାଜ୍ୟ       ଲକ୍ଷ୍ମୀ ଅବା ନିଜେ ବିଜେ,
ମେଲିଛନ୍ତି ଗନ୍ତାଘର ସାରି,
ଶାସନର ମୂଳେ ଯହିଁ       ସ୍ନେହ ମମତା ଫୁଟଇ
ପରଜା ମଣଇ ପିତା ପରି !

ଏକାଳେ ବରଗୀ ଗୋଳ       ହୋଇଲା ଅତି ପ୍ରବଳ
ଗ୍ରାମେ ପଶି ଲୁଟିଲେ ସମ୍ବଳ,
ପୀଡ଼ନ, ଧର୍ଷଣ ଆଦି—       ଯେତେକ ଅକର୍ମ ସାଧି
ରାଜ୍ୟସାରା ପଡ଼ିଲା ଚହଳ ।

ସମ୍ମୁଖ ସମର ପାଇଁ       ଦେଖା ତ ମିଳଇ ନାହିଁ
ପର୍ବତ, କନ୍ଦରା ଘୋର ବନେ—
ବରଗୀଏ ବାନ୍ଧି ଦଳ       ରାଜାରେ ଦେଲେ ଖବର
ଦଶ ବରଷର କର ଦାନେ !

କୁପିଲେ ମନ୍ଦରଧର— ଗର୍ଜ୍ଜି କଲେ ଟେରଟେରେ କାର
ତଡ଼ିଲେ ପାଇକେ ଖଣ୍ଡା ଧରି,
ଏଣୁ ପଳାଇ ସେ ତେଣେ ଲୁଟି ଲୁଟନ୍ତି ଅଧର୍ମେ
ନରସିଂହ ପୁର ଉଠେ ଥରି ।

ସମ୍ମୁଖେ ପଡ଼ିଲେ ଭେଟ ପାଇକଙ୍କ ଖଣ୍ଡା ଚୋଟ
କାଟଇ ବରଗୀ ଅଗଣନ,
ରକ୍ତବୀର୍ଯ୍ୟ ବଂଶପରି କାହୁଁ ପୁଣି ଯାଏ ବଢ଼ି
ରାଜ୍ୟେ ପଶି କରନ୍ତି ଲୁଣ୍ଠନ ।

   

ଭାଗ୍ୟ, ଚକ୍ରନେମୀ ପରି ଘୂରେ ଦିବସ ଶର୍ବରୀ
ଅନ୍ଧାର ଆଲୋକ ସିନା ଭାଗ୍ୟର ଫଳ,
ଏଥିପାଇଁ ସଦାନତ, ନୁହେ ବିବେକୀ ମହତ,
ଅସି ଥାଉଁ କରେ ଶିର ହୋଇବ ତଳ ?

ରାଜ ପରିବାର ଗଣେ ଗୁପତେ ରଖି ଅରଣ୍ୟେ
'ପରଖିବା ଦେଖି କେତେ ବରଗୀ ବଳ,'
ଭାନୁ ମଙ୍ଗରାଜ ତୁଲେ ରାଜା ଏ ବିଚାର କଲେ,
ଏକା ମଙ୍ଗରାଜେ ମହାବଳୁଁ ପ୍ରବଳ ।

ଏକେ ରାଜ-ବଂଶଧର ସେନାପତି ଏ ରାଜ୍ୟର
ଭାନୁ ମଙ୍ଗରାଜ ନାମେ, ବରଗୀ ଠକ,
ସଦା ଥରହର ଡରେ ମଙ୍ଗରାଜ ସ୍ମରଣରେ
ସରଦାର ଶିରେ ଅବା ପଡ଼େ ଚଡ଼କ ।

'ବରାହ ଖୋଲ' ତା ନାମ    ହିଂସ୍ର ପଶୁ ଲୀଳା-ଧାମ
ଦିବସରେ ନ ଦେଖଇ ତପନ କର,
ପର୍ଣ୍ଣ-କୁଟୀର ଦୁଆର    ଦେଖି ରାଣୀ ପରିତୁଷ୍ଟ
ଏ କାଳ କାଟିବେ ରାଜା କଲେ ବିଚାର ।

ସୁକୁମାରୀ ମହାଦେଈ    ପଥ ଚାଲି ନ ଜାଣଇ
ଆସନ୍ନପ୍ରସବା ପୁଣି ଥିଲେ ଦଇବେ,
ପଥେ ଯାଇଁ ବୃକ୍ଷତଳେ    ଯୁବରାଜ ଜାତ ହେଲେ
ରାଜ-ରାଣୀ ହୋଇ କେତେ ଦୁଃଖ ସହିବେ ?

କାହିଁ ମଙ୍ଗଳ ବାଜଣା—    ଗ୍ରାମଦେବତା ମାଜଣା
କାହିଁ ରାଜ ସିଂହଦ୍ୱାରେ ପ୍ରଜା ଗହଳ,
ମତ୍ତ ମାତଙ୍ଗ ଚିଁକାର    ଅଖଣ୍ଡ ଝିଲ୍ଲୀ ଝଂକାର
କୁଟୀର ପାରୁଶେ ସିନା କରେ ଚହଲ ।

ଛଳେ ବୀର ମଙ୍ଗରାଜେ    ରହିଲେ ମାଣିକ ରାଜ୍ୟେ
ଜଣାଇଲେ ଅଠନ୍ତି ସେ ଭାଜବଇରୀ;
ରାଜବଂଶୀ ହୋଇ ଅଂଶ—    ନ ପାଇ ସେ ଅସନ୍ତୋଷ
ଦେଖି ନ ପାରନ୍ତି ତେଣୁ ନୃପତି ଶିରୀ ।

ଏକେ ଥାଏ ଚିତ୍ତେ ଦର    ସତ୍ୟ ମଣି ଠକଦଳ
ମଙ୍ଗରାଜେ ବରଗୀଏ ଦେଲେ ବଚନ,
ଚଉଠ ଆଦାୟ କର    ମନ ସୁଖେ ଯିବୁ ଫେର
ଭାଗ ଛାର ପାଇଁ ଦୁଃଖ ନ କର ମନ ।

ଏ ରାଜ୍ୟ, ଏ ସିଂହାସନ, ରାଜଟୀକା, ସନ୍ମାନ
ଅରପିବୁ ମଙ୍ଗରାଜେ ତୁମ୍ଭର କର,
ଉଦ୍ଧତ ମନ୍ଦରଧର ନ ଦେଲୁ ଆମ୍ଭର କର
ଦଳିବାରେ ତାକୁ ଯେବେ ହୋଇବ ବଳ ।

ଚତୁର ସେ ମଙ୍ଗରାଜେ ସହାୟ ହେବା ନିର୍ଦ୍ଧୋଷେ
ମନ୍ତ୍ରଣା ଶୁଣାନ୍ତି ଥାଇ ବରଗୀ ସଙ୍ଗେ,
ନୀରବ ହେଲେ ଧରଣୀ ଅଶ୍ୱ ଚଢ଼ି ବୀରମଣି
ଝୁମୁଟରେ ଜଣାନ୍ତି ନିତ ନିଶି ପ୍ରସଙ୍ଗେ ।

ମନ୍ତ୍ରଣା ହୁଅଇ ପଣ୍ଡ ବରଗୀଏ ଲଣ୍ଡଭଣ୍ଡ
ଝଡ଼ପରି କାହୁଁ ଆସି ପାଇକ ଗଦା,
ପରଚଣ୍ଡ ଖଣ୍ଡା ଧରି ଠେକ ଅବା କୁନ୍ତେ ବିଦାରି
ଅତ୍ୟାଚାରୀ ବସ୍ୟୁଦଳେ କରନ୍ତି ପଦା ।

ନଅବର୍ଷ ଏହିପରି ମଙ୍ଗରାଜେ ଛଳ କରି
ଜଗିଲେ ବରଗୀ ବଳେ ଶକୁନି ଯଥା,
ନୋହିଲେ ଥାଆନ୍ତା ନାହିଁ କେ ଆଜ ହୁଅନ୍ତା ଗାଇ
ନରସିଂହ ପୁର ଅବା ମାଳତୀ କଥା ?

ଦଇବ ବିପାକେ ଥରେ ବରଗୀ ଚୁର ଭେଟରେ
ପଡ଼ିଗଲେ ମଙ୍ଗରାଜେ ବନ ପଥରେ,
ମନ୍ତ୍ରଣା କରନ୍ତେ ବସି ଅରୁଣ ଉଦୟ ଆସି
ବାହୁଡ଼ି ପାରିଲେ ନାହିଁ ସେ ନିଶୀଥରେ ।

ବରାହ-ଖୋଲୁଁ ବାହାର     ରାଜା ମଙ୍ଗରାଜେ ମିଳି
ବନେ ଏକ ତରୁତଳେ ହୁଅନ୍ତେ କଥା,
ମଙ୍ଗରାଜେ ଦେଖିଦେଲେ     ପାଶେ ଲତା ଅନ୍ତରାଳେ
ଅଧା ଅଧା ଦିଶେ ବେନି ବରଗୀ ମଥା,

ରାଜାରେ କହିଲେ ଠାରି,     "କଥା ଆଜି ଗଲା ସରି
ଜାଣିଥିଲା ବରଗୀ ମୁଁ ଯମ୍ଭୁ ଭଗାରି,
ସମ୍ବାଦ ତ ଦେବେ ଯାଇ     ଆଉ ତ ଉପାୟ ନାହିଁ
ଶୁଣି ଦଳପତି ହେବ ବିଷ ଭଗାରି ।"

ଏତେ କହି, ନୃପବର     ସନ୍ଧାନି ବରଗୀଚର
ଶିରେ ଗୁଳିମାଡ଼ କଲେ ଅବ୍ୟର୍ଥ ସେ ତ,
ପବନ ବେଗରେ ଧାଇଁ     ଆରେକ ଗଲା ପଳାଇ
"ବରଗୀ ପାଶେ ବାରତା ଦେବ ଟି ଏ ତ ।"

ମଙ୍ଗରାଜେ ଏତେ କହି     ବେଗେ ଅଶ୍ୱ ଚପଟାଇ,
ପ୍ରବେଶ ହୋଇଲେ ଆସି ନିଜ ଆବାସ,
କହିଲେ ମୁକୁନ୍ଦେ ରାଇ     "ଆଉ ବାବୁ ଡର ନାହିଁ,
ମାଳତୀରେ ରକ୍ଷିଆସ ରାଜାଙ୍କ ପ୍ରାଣ ।

ଏତେ କାଳ ଜଗି ଜଗି     ଶେଷେ ଜାଣିଛନ୍ତି ବରଗୀ,
ନୃପତି ସହିତେ ମୋର ଅଛି ବିଶ୍ୱାସ,
ଅନ୍ତଃସତ୍ତ୍ୱା ବଧୂ ମୋର     ଆଗତ ବିପତ୍ତି ଘୋର
ଏକମାତ୍ର ସନ୍ତାନରୁ ଜୀବନ ଆଶ ।

ରହିଛି ମୁଁ ଘର ଜଗି          ଆସିବେ ଯେବେ ବରଗୀ
       ଅଛି ତ ବାହୁରେ ବଳ, ପ୍ରହର ବେଳ,
ଥିବ ଦ୍ୱାରେ ଅଟକାଇ          ପଛୁଆଁ ପାଖରୁ ଯାଇ
       ରାଜାଙ୍କ ନିକଟେ ବଧୂ ସଙ୍ଗରେ ଦେବ ।

ଥିବୁ ଅତି ସାବଧାନ          ମାଳତୀ ମୋ କୁଳ ମାନ
       ପୁଣି ଗର୍ଭବାସ ପୂର୍ଣ୍ଣ ନବମ ମାସ,
ଦେବ ସଙ୍ଗେ ଅଶ୍ୱ ପରେ          ଗଢକର ଧୀରେ ଧୀରେ
       ବୀର-ସୁତ ମୋର ଢଲେ ନୁହ ହତାଶ ।"

—ଦୁଇ—

ଦୁଃଖ ପରେ ଦୁଃଖ ଭାଲେ ବିଧି ଲହିଥାଇ,
ଅଦୃଷ୍ଟ ବୋଲି, ଅଦୃଷ୍ଟ ବିନା ସେ ବୋଲଇ,
       ତେଣୁ ଅବିବେକ ପଣେ,
ଜଗତରେ ବିଧାତାକୁ ଲୋକ ପର ଗଣେ ।

[ ୨ ]

ରୂପେ ଗୁଣେ ମାଳତୀ ସେ ମାଳତୀ ଯା ନାମ,
ସୁର ପୁର ବାଲୀ ଖଣ୍ଡ-ତପେ କି ଜନମ ?
       ଅବା କୈଳାସ ପୀଠର,
ପାର୍ବତୀ ସମାନ ହେବ, ବୟସ ଅଠର ।

[ ୩ ]

ଶ୍ରୀମୁଖ ସୁନ୍ଦର ପଣେ ନିନ୍ଦଇ ଚନ୍ଦ୍ରମା,
ମଳିନ ନଳିନ ହେବ ନୟନ ସୁଷମା,
ଅଙ୍ଗେ ପରଶ ବାଧିବ,
ଡର ନ ଧର କି ? ମନେ ଗଢ଼ିଛି ଦଇବ ।

[ ୪ ]

ବଲଙ୍ଗୀ ବାଉଁଶ ବଂଶେ ନିଘଞ୍ଚ ବନାନୀ,
ଗର୍ଭଭରେ ନିଶକତ ନାହିଁ ମୁଖେ ବାଣୀ ।
ପଥ ଭୁଲେ ଚଳେ ସଙ୍ଗୀ,
ବିଷମ ବନ୍ଧୁର ପଥେ ଅଶ୍ୱ କରେ ଗତି ।

[ ୫ ]

ଜନମ ଦୁଃଖିନୀ କରି ଗଢ଼ିଥିଲେ ଧାତା,
ବଳି ନାହିଁ କାଳ, ଦୁଇ ବରଷର କଥା,
ଶୁଭ ବିବାହ ବାସର,
ଆକାଶ, ପୃଥିବୀ ଏକା ସାକ୍ଷୀ ଥିଲା ତାର ।

[ ୬ ]

ବରିଥିଲି ବର କରେ ଭେଟି ତରବାର,
ପ୍ରତିଦାନେ ଭାଲି ଏକ ପ୍ରୀତି ଉପହାର—
ବର ଦେଇଛନ୍ତି ବଢ଼ାଇ,
ଶରଧାରେ ଯେବେ ମନେ, ମଣିଛି ବଡ଼ାଇ ।

[ ୭ ]

ସେ ଛବି ତା ଆଖି ଆଗେ ଦିଶେ ଜଳଜଳ,
ସଂଭାଳି ନ ପାରେ ମାନ ଅଶ୍ରୁର ଦୋହଲ,
ଗର୍ଭ ବେଦନା ପ୍ରବଳ—
ପଡ଼ିଲା, ଝାଉଁଳି ବାଳା, ହେଲା ଟଳମଳ ।

[ ୮ ]

ଅଶ୍ୱ ପୃଷ୍ଠୁଁ ବେଗେ ଜନେ ଆସିଲେ ଭୂତଳ,
ମୁକୁନ୍ଦ ନୟନ କୋଣେ ନୀର ଝଳମଳ,
ଦେଖି ମାଳତୀ ବିକଳ,
ଶିର ଘୂରି ଚଉଦିଗ ହେଲା କି ଅନ୍ଧାର ?

[ ୯ ]

ଇଷ୍ଟ ଦେବୀ 'ସରଗଳା' ଜପେ ନିରତରେ,
ଜନମ ଲଭିଲା କନ୍ୟା-ରତ୍ନ ଦଣ୍ଡକରେ,
ଜାଣେ ସିନା ଅସି ଧରି,
ପ୍ରସବ ବେଦନା କାହୁଁ ଜାଣିବ ସୁନ୍ଦରୀ ?

[ ୧୦ ]

ଅନୁମାନେ ସାରି ବେଗେ ଜାତ-କର୍ମମାନ
ଝରଜଳେ ଶେଷ କଲେ ପ୍ରସୂତି ସ୍ନାହାନ ।
ଚଳେ ନବଦଳ ପାରି,
କନ୍ୟା ଭୁଲେ ବିଶ୍ରାମିବେ, ଦଣ୍ଡେ ଥିଲେ ଭଲି ।

[ ୧୧ ]

ଏକାଳେ ପଡ଼ିଲା କାନେ ତଡ଼କ ଧମକ,
ଦୂରପଥ, ଘୋରବନ, ଆଣିଲା ଚମକ,
ବଧି ବଧି ହେଲା କାଳ,
ଅଶ୍ୱିନ ଆକାଶେ ଘୋଟିଗଲା ମେଘ ମାଳ ।

[ ୧୨ ]

ବିଶ୍ରାମ ପାସୋରି 'ପରଗଲା' ନାମ ଧରି,
ଉଠିଲେ ମୁକୁନ୍ଦ, ପୁଣି ପାରିଲେ ସେ ବାରି,
ପାଖେ ବନ ହସ୍ତୀ ପଲ,
ପଲସି ଆସନ୍ତି ବର୍ତ୍ତିବାକୁ ନାହିଁ ଡର ।

[ ୧୩ ]

ଝାବୁଡ଼େ ପଡ଼ିଲେ ଭେଠ ଯମର ଅଗଣା,
ବନହସ୍ତୀ ଧଉଡ଼ିବା ଡର ତାଙ୍କୁ ଜଣା,
ଲୁଚି ବଳଙ୍ଗୀ ଉହାଡ଼େ,
ଫିଙ୍ଗିଲେ ଉପଲ-ଖଣ୍ଡ ଦନ୍ତା ରଡ଼ି ଛାଡ଼େ ।

[ ୧୪ ]

ଦୂରେ ଫେର କରନ୍ତୁଥେ ଶଙ୍ଖ ବାଜୁଥିଲେ,
ଅଶ୍ୱ ପୃଷ୍ଠେ ତିନି ଜଣ ବେଗେ ଚଳିଗଲେ,
ପୁଣି ବିପଦ ଆଗରେ,
ଦିଶିଲା ବରଗୀ ଦଳ ଦକ୍ଷିଣ ଭାଗରେ ।

[ ୧୫ ]

ହାବୁଡ଼େ ପଡ଼ିଲେ,—ଯହିଁଲାଗି ଚଢ଼େ ଧର,
ଯାହା ହେତୁ ଆଜ ତେଜ ଆସିଛନ୍ତି ଘର,
ଲୋକ ଯହିଁଙ୍କ ଡରଇ,
ବଧାତା ଭିଆଣେ ସ୍ପୁଣି ତହିଁରେ ମରଇ ।

[ ୧୬ ]

ଦେହ-ଛପା ଦେବେ ଭଲ ହେଲେ ତତପର,
ଅଶ୍ବକୁ ବାନ୍ଧବେ କାହିଁ ଭାଲନ୍ତି ମନର,
ହସି ବରଗୀରୁ ଜଣେ,
ପାଶେ ଆସନ୍ତେ, ମୁକୁନ୍ଦ ବଗୃଚଲେ କ୍ଷଣେ ।

[ ୧୭ ]

ଆଉ କପାଁ ଭୟ୍ଯ ଯେବେ ନିଶ୍ଚିତ ମରଣ ?
ସିଂହ ସୁତ ମୁହିଁ; ମୋର ଜନମ ତ ରଣ,
ନାହିଁ ତହିଁକ ଶୋଚନା,
ପ୍ରସୁତ, କନ୍ୟାର ଚନ୍ତା ଦିଅଇ ଯାତନା ।

[ ୧୮ ]

ମାଳତୀ ଏକାଲେ ଦମ୍ଭ ଦେଇ କହେ କଥା,
"ଜନମ ମରଣ ସାଥୀ, ମୁଁ ପର୍, ଦେବତା !"
ମିଛେ ନୁହ ଡୁମ୍ଭେ ଘାର୍,
କର୍ତ୍ତବ୍ୟ ତୁମର ବେଗେ ଧର ତରବାରି !"

[ ୧୯ ]

ନିଷ୍କୋଷିତ ଖର-ଅସି ଧରି ବୀରବର,
ତୁରଙ୍ଗମୁଁ ଓହ୍ଲାଇଲେ ଖରେ ଭୂମିତଳ
ଡାକେ "ଆସ ଜଣେ ଜଣେ,
ଯୁଝ ସଙ୍ଗେ ମୋର ଯେବେ ଗଣ! ବୀର ପଣେ।"

[ ୨୦ ]

କହିଲା ପାତକୀ "ମିଛେ କିପାଁ ଏ ସମର ?
ଜାଣିଛୁ ତ ରାଜା ଆମ୍ଭେ, ରାଜ୍ୟ ତ ଆମ୍ଭର,
କାହୁଁ ଅଣିଛୁ ତରୁଣୀ,
କରେ ଦେଇ, ସୁଖେ ଯାଅ, ହେବୁ ଚିରଋଣୀ।"

[ ୨୧ ]

ମକୁନ୍ଦ ନୟନେ ଜଳି ଉଠିଲା ଅନଳ,
ହୋଇଲେ ମାଳତୀ ଯୁଦ୍ଧେ ଲାଗି ତତପର,
କାନି ପଣତେ ପୁରାଇ,
କନ୍ୟାକୁ ବାନ୍ଧିଲେ ନିଜ କଟିରେ ଘେରାଇ।

[ ୨୨ ]

ପଥର ଜୀବନ-ଆଶା ନାହିଁ ସତୀ ମନେ,
ସଜ ଫୁଲ ସର ସୁତା ମଉଳିବ ବନେ,
ମାନ ଥିବା ଯାଏ ଅସି,
ଛୁଇଁ ନ ପାରିବ ପାପୀ ଏ ଅଙ୍ଗ ଭରସି

[ ୨୩ ]

ବରଗୀ କୁଟେ ଭର୍ତ୍ସନା କରିଲେ ଅନେକ,
ମୁକୁନ୍ଦ କହିଲେ, "ରକ୍ଷ ଦିଅ କଥା ଟେକ,
ହୀନ ପିଶାଚର ଦଳ,
ନାରୀର ମହତ୍ତ୍ୱ କାହୁଁ ବୁଝିବ ଚଣ୍ଡାଳ ?"

[ ୨୪ ]

ଦଳରୁ ଆଗୁଆ ଜଣେ ଏ କାଳେ ବାହାରି,
କହେ କଥାରେ କି ଲଭ ନାରୀ ଆଣ ଧରି,
ଶୁଣି ମୁକୁନ୍ଦ ପ୍ରଚଣ୍ଡ—
ଅସି ଘାତେ ଗଣ୍ଡି ମୁଣ୍ଡ କଲେ ଖଣ୍ଡ ଖଣ୍ଡ ।

[ ୨୫ ]

ବେନି ପକ୍ଷେ ଆରମ୍ଭିଲା ତହୁଁ ଘୋର ରଣ,
ଏକାକୀ ମୁକୁନ୍ଦ, ଅରିପକ୍ଷେ ବହୁଜନ,
ଦେଖି ଅଶ୍ୱରୁ ତୁରିତେ—
ଓହ୍ଲାଇ ମାଳତୀ ଉଭା ରଣଚଣ୍ଡୀ ସତେ !

[ ୨୬ ]

ଦୁହେଁ ମିଶି ବରଗୀର ଦଳେ କଲେ ପଦା,
ବଣ୍ଡକରେ କଣ୍ଠାମୁଣ୍ଡ ହୋଇଗଲା ଗଦା,
ସେ କି ଦେଖିଥିଲେ ଆଉ ?
କଳିଙ୍ଗ-କୁଳ-ଲଳନା ତରବାରୀ ଦାଉ ।

[ ୨୭ ]

ଝଟଣେ ଅଧେ ପଳାଇଲେ ବଞ୍ଚାଇ ଘଷ୍ଟଣେ,
ଦେଖିଲେ ମାଳତୀ ତହୁଁ କନ୍ୟା କଥା ମନେ,
ବେଗେ କମର ଫେଇଲେ,
ଏତେ ଦୁଃଖେ ତୋପେ 'କୁଆଁ' ଶବଦ ଶୁଣିଲେ ।

[ ୨୮ ]

ଅଶ୍ୱପରେ ବସି ସ୍ଥାନ ତେଜିଲେ ତତ୍‌କ୍ଷଣେ,
କିନ୍ତୁ ଦୂର ପଥେ ଏ କି ବଚନ ଘଟଣେ !
ପାପୀ ବରଗୀର ଦଳ,
ଅସ୍ତ୍ରଶସ୍ତ୍ର ଅଗଣନ ଶୁଭିଲା ଚହଳ ।

[ ୨୯ ]

ମୁକୁନ୍ଦ କହିଲେ ସହି ! ଆଉ ରକ୍ଷା ନାହିଁ,
ଅସଂଖ୍ୟ ବରଗୀ ସେନା ଆସେ ଏଣେ ଧାଇଁ,
ଉପରେ ପଳାଇ ଯେ ଥିଲା,
ଦଳେ ଯାଇ ସମ୍ବାଦ ସେ ନିଷ୍ଠୁର କହିଲା ।

[ ୩୦ ]

ନବଜାତ ଶିଶୁରେ ଅନାଇଁ ବୀରବର,
କମଳ ନୟନ ହେଲା ନୀରେ ଛଳ ଛଳ,
"ଏକା ଏହା ଲାଗି ଥିବୁ,
ରଖିବ ଏ କୁଳ ନାମ ଜୀବ ନ ତେଜିବୁ ।

[ ୩୧ ]

ବୀରର ଜୀବନ-ସାଥୀ ଉତ୍ଥାନ ପତନ,
ଶେଷ.ରେ ବାନ୍ଧବ ! ଏ ମୋ ଶେଷ ଆଲିଙ୍ଗନ,
ଭବେ ଥିବା ଯାଏ ଜୀବ,
ପଛଘୁଞ୍ଚା ଦେବାର ଭଗାରି ନ ଦେଖିବ ।"

[ ୩୨ ]

ବାଣୀ ଶୁଣି ଝରେ ନୀର ନୟନୁଁ ସଞ୍ଚାର,
ଦଣ୍ଡକେ ଧଇର୍ଯ୍ୟ ଧରି କହେ, "ଅହେ ବୀର !
ତୁମ୍ଭେ ନ ହୁଅ ଅଧୀର,
ଧରାରେ ଜନମ ଲଭି ନୁହଇ କେ ଚିର ।

[ ୩୩ ]

ବୀର ନାସ୍ତି ଜାଣେ ମରି, ମାରି ଜାଣେ ଅରି,
ମୋ ଚିନ୍ତା ପାସୋରି ବୀର, ସାଜ ବେଗ କରି,
କହେ ତୁମ୍ଭର ସାକ୍ଷ୍ୟରେ,
ଆଜ୍ଞା ପାଳିବ ଦେହ ଦେବ ! ଅକ୍ଷରେ ଅକ୍ଷରେ ।"

[ ୩୪ ]

କାହୁଁ କାହୁଁ ଝଡ଼ ସରି ବରଗୀ ଆସିଲେ,
ଖର ଅସି ଝଲକାଇ ମୁକୁନ୍ଦ ଭାଷିଲେ,
କିସ ଲେଉଟୁଛ ଧାମରେ,
ଭାନୁ ମଙ୍ଗରାଜ ମୁଣ୍ଡ ସମରେ କି ଡରେ ?

[ ୩୫ ]

ଅଟ୍ଟହାସେ ହସି କହେ ବରଗୀ ପ୍ରଧାନ,
"ଜୀବନରେ ତୋର ନାହିଁ ଆମ୍ଭ ପ୍ରୟୋଜନ,
ଦିଅ ଏ ନାରୀ-ରତନ,
ପ୍ରତିଦାନେ ମାଗି ନିଅ ଯେତେ ଇଚ୍ଛା ଧନ ।"

[ ୩୬ ]

ମୁକୁନ୍ଦ କହିଲେ, "ଆରେ ପାମର ଦୁର୍ଜ୍ଜନ,
ଜୀବନେ ନ ଥିବ ଦେଖି ବୀରର ମରଣ,
ନାହିଁ କଥାରେ କାରଣ,
ଭୀରୁ ନୋହିଲେ କି ଅସିଥାନ୍ତ ପଣ ପଣ ?"

[ ୩୭ ]

ରେ ରେ କାର ଉଠେ କମ୍ପେ କାନନ ଗଗନ,
ଅସୁମାର ଅରି ଶିର ଛେଦିଲେ ବହନ,
ଦେଖି ମୁକୁନ୍ଦର ରଣ,
ବରଗୀ ଭାଳିଲେ,—କଲେ ପ୍ରମାଦ ବରଣ ।

[ ୩୮ ]

ଜଣକୁ ଜିଣେ ନ ପାରି ସେ ବରଗୀ ଜାତି,
ଏକାବେଳେ ଘେରିଗଲେ ବୀର ଚଉକତି,
ଷଣ୍ଢ ଭେଣ୍ଡା ଯେତେ ଥିଲେ,
ଜୀବନ ମରୁଛି ଖଣ୍ଡା ଧରି ଆକ୍ରମିଲେ ।

[ ୩୯ ]

ପଡ଼ିଲା ମୁକୁନ୍ଦ କରୁ ଖଣ୍ଡା ପ୍ରିୟ ଅସି,
ମାଳତୀରେ ବରଗୀ କେ ପଚାରଇ ହସି,
"ଦେଖ ତୋର ପତି ଦଶା,
ଆଉ କି ରଖିଛୁ ତାର ପ୍ରାଣର ଭରସା ?

[ ୪୦ ]

ଏବେ ହେଲେ, କହ ଭଲେ ଆମ୍ଭ ତୁଲେ ଯିବୁ,
ନାହିଁ କଲେ ଛାଡ଼ ଦେବୁ, ଜୀବେ ନ ମାରିବୁ;
ଗର୍ଜି କହିଲେ ମାଳତୀ,
"କି ଭୟ ଦେଖାଉ ମୋତେ ଆରେ ପାପମତି ?

[ ୪୧ ]

ପତି ଜୀବ ଭିକ୍ଷା ମାଗି, ଡରିବ ମରଣେ,
ବୀର ନାରୀ ମାରି ଜାଣେ, ମରି ଜାଣେ ରଣେ,
ଧର୍ମ ଛାଡ଼ିଲା କି ସତେ ?
ନାହିଁ କି ତୁମ୍ଭର ମାତା ଭଗିନୀ ଜଗତେ ?

[ ୪୨ ]

ପବିତ୍ର ଶିବାଜୀ ବଂଶେ ଜନମ ବୋଲାଅ,
ନାହିଁ କି ପାପୀଏ ପଶୁ ପରି ବଢ଼ିଥାଅ,
ଗଲେ ଯିବ ପତି ଜୀବ,
ସତୀ ଅଭିଶାପୁଁ ଜଣେ ହେଲେ ନ ବଞ୍ଚିବ ।"

[ ୪୩ ]

ଦେବୀ ବାଣୀ ଶୁଣି ପାପ-ବରଗୀ କୁହାଟି,
ସଙ୍ଗୀ ଆଗେ ପଡ଼ ଅଙ୍ଗ ଖଣ୍ଡ ଖଣ୍ଡ କାଟି,
ହସି ପିଶାଚ ସମାନ,
କହେ କେ "ଏଥର ତୋର ଭାଜିଲ ତ ଠାଣି?"

[ ୪୪ ]

ପଛଲଗି ଷଣ୍ଡା କାଳ ଝାଉଁଳି ମାଳତୀ,
କଟିରେ ଭିଡ଼ି କନ୍ଥାରେ ଚେଢିଲେ ଝଟେତ,
ଅଶ୍ୱୁଁ ଉତୁରି ଧାଇଁଲେ
କୁଲାଳଚକ୍ର ବେଗରେ ଅସି ବୁଲାଇଲେ ।

[ ୪୫ ]

ପ୍ରଚଣ୍ଡ ଗର୍ଜନେ ଯଥା କୁପିତା ଫଣିନୀ,
ଅସୁର ବିନାଶେ ଅବା ମହିଷ-ମର୍ଦ୍ଦିନୀ,
ଗଣ୍ଡା ଗଣ୍ଡ ଭେଣ୍ଡା ମୁଣ୍ଡ
ଦଣ୍ଡକରେ କାଟି ମହୀତଳେ କଲେ ରୁଣ୍ଡ ।

[ ୪୬ ]

ଏ କାଳେ କହିଲ କିସ କାହୁଁ ଉଠେ ଚର,
ବରଗୀଏ ଗୁଡ଼ ପଳାଇଲେ ରଣ ସ୍ଥଳ,
ଧାଉଁ ବିଜୁଳି ବେଗରେ,
ଝୁମ୍ପୁପଥେ କଣ୍ଟା, ଣ୍ଟା ଣ୍ଟି ଥୋକେ ପଡ଼ି ମଲେ ।

[ ୪୭ ]

ଅର୍ଜୁନଙ୍କ ଏ କି ହେଲା ସତୀ ନ ଜାଣିଲେ,
ପଡ଼ି କଣ୍ଠ ଶିର ତୋଳି ବକଲେ କାନ୍ଦିଲେ,
ଚୁମ୍ବ ଦେଇ ବାର ବାର,
ଗଣ୍ଡ ଭରି ଝରି ପଡ଼େ ଶ୍ରାବଣର ଧାର ।

[ ୪୮ ]

ପଶାତେ ଦେଖି ସେ ଅଙ୍କ ଶିଶୁର ଜୀବନ,
ଏତେ ଦୁଃଖେ କହେ ସାଧୁ ସାଧୁ ଭଗବାନ !
ବେଗେ କଲା ସ୍ତନ୍ୟ ଦାନ,
ସତୀର ବେଦନେ ସତେ କାନ୍ଦଇ କାନନ !

—○—

—ଫନି—

ସୁତ ବଧୂରେ କାନନେ ପଠିଆଇ,
ଚିତ୍ତ ଚଞ୍ଚଳ ମନ~~କ~~ରେ ସୁଖ ନାହିଁ ।
ସତେ ବପଦୁ ଡରିବ ମୋର ବଳା,
ଏତେ ସୁଦୟା କରିବୁ "ପରଗଲା !"
ଆଣ୍ଟେ କଳିଣି ଲଗାଇ ପୁର ଦ୍ୱାର,
ବାଣ୍ଟେ ଭାନୁ ତ ମନରେ ବାର ବାର !
ଗୁରୁ ମୁଖରୁ ଶୁଣି ସେ ସରଦାର,
ଘୋର କୋପରେ ହେବଣି ଜର୍ଜର !

ଧାଇ ପାପ-ବରଗୀରେ କହୁବଣି,
ଯାଇ ବେଗେ ମଙ୍ଗରାଜେ ଦଅ ଆଣି ।
କହୁଁ କହୁଁ ସେ ଦୁଆରେ ଶୁଭେ ଗୋଳ,
ବହୁ ଲୋକ ଡାକୁଛନ୍ତି, "ଖୋଲ, ଖୋଲ" ।
ଜାଣି ଶୁଣି ମଙ୍ଗରାଜେ କଲେ ମଠ,
ବାଣୀ ଭଣିଲେ "କିଏ ସେ କଟାଁ ହଠ ?"
କହେଁ "ଆସ ହେ, ଡାକନ୍ତି ସରଦାର,
ସହେ ନାହିଁ ତ ଉଚ୍ଛୁର, ଖୋଲ ଦ୍ୱାର ।"
ବନ ପାର କି ହେବଣି ସୁତ ସହେତ,
ମନ ମଙ୍ଗରାଜଙ୍କର ଭାଳେ ଏତେ ।
ଘରେ ପଶିବେ ଧସାଇ ବରଗୀଏ,
ଖରେ ଦେଖିବେ କୁଟୁମ୍ବ ନାହିଁ କିଏ ।
ଓରେ ମନ ମୋ ଯେବେ ସେ ବାର ପାର,
ଗୃହରେ ଧାଇଁବେ ବନରେ ପଛ ଧର ।
ଭାଳି ଉଚ୍ଛୁର କରନ୍ତି ବୀରବର,
ଠେଲି ଦେବେ ବରଗୀ ତ ପୁରଦ୍ୱାର,
ବହୁ ସଇନା ଅଛନ୍ତି ହୋଇ ମେଳ,
ତହୁଁ ଉଚ୍ଛୁର ନ କର ଆଉ ବେଳ ।
କର ପ୍ରଣାମ, ସୁମର 'ପରଗଲା'
ଧର ଅସିକି ଚୁମ୍ବିଲେ ବୀରବଳା,
ଯାଇ କବାଟ ଫିଟାଇ ଉଭାରିଲେ,
"କାହିଁ ପାଇଁ କି ଆସିଛ" ପଚାରିଲେ ।
ଝଟେ ଗରଜି କହଇ, "ବେଗେ ଆସ,
କଟେ ପଶିଛୁ ଜୀବନେ ରଖି ଆଶ ?

ତୁ ତ ଗୁପତମାରଣା, ରାଜ-ଗୁରୁ,
ତୁ ତ ଘଡ଼ବ, ଡାକୁଙ୍କ ସରଦାର ।"
କହୁଁ କହୁଁ ତ ବଚନ ଗଲା ବଳି,
ଗୁହୁଁ ଗୁହୁଁ ହେଲେ ଅସି ଚଳା-ଚଳି ।
ବୀର ବୁଲାଇ ମାରିଲେ ଖର ଖଣ୍ଡା,
ଶିର ଭୂମିରେ ଲୋଟିଲା ଗଣ୍ଡା ଗଣ୍ଡା ।
ରଢ଼ ବରଗୀ ପଞ୍ଚାଏ ବେଢ଼ିବାରୁ,
ଝଡ଼ପଡ଼ିଲା କୃପାଣ ଭାନୁକରୁ ।
ଯଥା ମଣିକୁ ହରାଇ ଅହିରାଜ,
ମଥା ନୁଆଁଇ ରହିଲେ ମଙ୍ଗରାଜ ।
ପଶି ପୁରରେ ବରଗୀ ଖୋଜ ହେଲେ,
"ଖସି କୁଟୁମ୍ବେ ବତାଅ କାହିଁ ଗଲେ ?
ଆଣି ଭେଟ ତୁ ତାହାଙ୍କୁ ଆମ୍ଭ ପାଶେ,"
"ଜାଣି ନାହିଁ" ବୋଲି ମଙ୍ଗରାଜ ଭାଷେ ।
ବନ୍ଦୀ କରି ନେଲେ ବାନ୍ଧି ପାଦ ପାଣି,
ଛନ୍ଦ ଗୁଡ଼ାଇ ରଜ୍ଜୁରେ ପୁଣି ଟାଣି
ବନ ପଥରେ କଣ୍ଟକ ବାଧେ ଅଙ୍ଗେ,
ମନ-ଇଚ୍ଛା କଟୁ ଭାଷା ତହିଁ ସଙ୍ଗେ ।
ଘନ ବିଜୁଳି ସମାନ ଚମକାଇ,
'ବନ, ହାତୀଏ ଆସିଲେ କାହୁଁ ଧାଇଁ ।
ଗୁହିଁ ବରଗୀ ଗଣିଲେ ପରମାଦ,
କାହିଁ ପଳାଇ ବଞ୍ଚିବେ ତେଜି ବାଦ ।
ଏକା ତେଜି ସେ ଭାନୁରେ ଧାଇଁ ଗଲେ,
ଟେକା ପଥର ହାବୁଡ଼ି ଥୋକେ ମଲେ ।

ବନ୍ଦେ ଥିଲାତ ପାରଧି-ଅନୁରାଗ,
ମନେ ହାତୀଙ୍କ ପଡ଼ିଲା ତଡ଼ା ବାଗ ।
ପଡ଼ି ଗଡ଼ ସେ ବିକଟ ରାବ କଲେ,
ରଡ଼ି ଛାଡ଼ି ତ ହାତୀଏ କେଣେ ଗଲେ ।
କାନେ ପଡ଼ିଲା ମାଳତୀ କଣ୍ଠସ୍ୱର,
ଧ୍ୟାନେ ଉଚ୍ଚୁର ନ କରି ବୀରବର ।
ପାଶେ ପଡ଼ନ୍ତି ଦେଖିଲେ ତରବାରି
ଆଶେ, ଗଡ଼ ସେ ଚଳିଲେ ବେଗ କରି ।
ଘସି ହୋଇଲେ ପିଠେଇ କରି ଅସି ଧାରେ,
ରସି ଛନ୍ଦ କି ସହଜେ ତୁଟି ପାରେ ?
ତଡ଼ି ପ୍ରବେଶ ନୃପତି ଏ କାଳରେ,
ବେଢ଼ି ଉପରେ କୋରଡ଼ା ପରକାରେ
କରି ଉପରେ ଫେରିଲେ ଯେ ବରଗୀ,
ଧରି ମାରିଲେ ପାଇକେ ଜଗି ଜଗି,
ଯୋଗ ଏମନ୍ତ ପୁଣି ତ ଲହିଥାଇ,
ଭୋଗ ପାଇଁତ କାହାରି ବଳନାହିଁ ।
ଘେରି ଥିଲେ ଯେ ବରଗୀ ମାଳତୀରେ ,
ଫେରି ପଲାଇଁ କହେ କେ "ଆରେ ଛରେ ।
"ଯେବେ ଜୀବନେ ଅଛି ରେ ଲବେ ଆଶ,
ତେବେ ଛାଡ଼ି ଏ ନାରୀକି ଧାଇଁ ଆସ ।
ମାଡ଼ି ଆସନ୍ତି ପାଇକେ ଅସି କରେ,"
ଛାଡ଼ି ଧାଇଁଲେ ପାପୀଏ ଜୀବ ଡରେ ।
ରାଗ ଜଳୁଛି ରାଜାର ପରଚଣ୍ଡ;
ବାଗ ପାଇ ସେ ହାଣିଲେ ଖଣ୍ଡ ଖଣ୍ଡ ।

ବନେ ଖୋଜନ୍ତି କାହାନ୍ତି ସେନାପତି,
ମନେ ମନେ ତ ସନ୍ଦେହ ବଢ଼େ ଅତି ।
ଯାଇ ଭାନୁରେ ଭେଟି ସେ କି ଆନନ୍ଦ !
ଧାଇଁ କାଟିଲେ ଅସିରେ ରଜ୍ଜୁ ବନ୍ଧ ।
ରଙ୍କେ ମିଳିଲା ଯେତେ କି କୋଟି ନିଧି,
ଅଙ୍କେ ତୋଳିଲେ ରାଜନ ସେହି ବିଧି ।

—o—

—ଗୃର—

ମଙ୍ଗରାଜେ କାନ ପାରି   ମାଳତୀର କଣ୍ଠ ବାରି
ପାଶେ ହେଲେ ପରବେଶ ଯାଇ,
ଶ୍ମଶୁରେ ନିରେଖି ବାଳା   ଶୋକ ସିନ୍ଧୁ ଉଚ୍ଛୁଳିଲା
ପତି କଟା ଶିର ଜାକି ଥାଇ ।

ଫାଟି ଯାଏ ଭାନୁ ଛାତି   ଆକୁଳେ ଅଧୀର ଅତି
ବହି ଯାଏ ଅଶ୍ରୁ ଧାର ଧାର,
କି ପାପ ମୁଁ ଥିଲି କରି   ବିଧାତା ରେ ! ନେଲୁ ହରି
ଏକା-ବୋଲି ମୋର କଣ୍ଠ-ହାର ।

ଶୋକରେ ଅଧୀର ରାଜା   ଯେତେ ପାଇକ ପରଜା
ନୀର ଧାରେ ତିନ୍ତି ଗଲା ମହୀ,
ହାତ ପାଦ ଗଣ୍ଡି ମୁଣ୍ଡ   ହୋଇ ଅଛି ଖଣ୍ଡ ଖଣ୍ଡ
ଏ ମରଣ କେ ପାରିବ ସହି ?

ପୁଣି ମାଳତୀ ମୁଖରୁ ଶୁଣିଲେ ଉସ ଆରମ୍ଭରୁ
ଘଟି ଅଛି ଯେ ପ୍ରମାଦ ମାନ,
ଅନୁଭବ ଦୂରେ ଥାଉ ଏସନ ବିପତ୍ତି ଦାଉ
ଶୁଣି ତ ନ ଥିବ କେବେ କାନ ।

ଶିଶୁ ପୌତ୍ରୀ କରି କୋଳ ଚୁମ୍ବ ଦେଇ ବାର ବାର
ସମ୍ଭାଳିଲେ ଭାନୁ ନିଜ ମନ,
"ସୁତ ବଦଳରେ ସୁତ— ପାଇଛୁଁ," କହନ୍ତି "ତୁ ତ
ବଧୂ ନୁହ, କୁଳର ନନ୍ଦନ ।"

ପାଇକେ ଲୁଣ୍ଠିଲେ ହୁରି "ଦିଅ ମା ଚରଣ ଧୂଳି
ଦାନ ନୁହ ମାଆ ତୁ ସବୁରି,"
ନେତ୍ରୁ ଝରେ ନୀରଧାର କହନ୍ତି ମନ୍ଦରଧର
"ରାଜଲକ୍ଷ୍ମୀ ଉତ୍କଳର ଶିରୀ ।"



ସୁରଧୁରେ—

# ନୂଆଁ ମିଳନ

## ସୂଚନା

ନୂଆଁ ଓଡ଼ିଶାର ଏକ ବିଶେଷ ପର୍ବାନୁଷ୍ଠାନ । ଆମ ଦେଶର ସ୍ୱାଧୀନ ନରପତିମାନେ ଏହି ଦିବସରେ 'ଅଙ୍କ' କାଟନ୍ତି । ଅଙ୍କକାଟି ଅର୍ଥ—ସେମାନଙ୍କ ନାମରେ ବର୍ଷ ପ୍ରଚଳନ । ସ୍ୱର୍ଣ୍ଣ ମୁଦ୍ରା ଉପରେ ସେଦିନ ତତ୍‌କାଳୀନ ସମ୍ରାଟଙ୍କ ନାମୋଲ୍ଲେଖ ହୁଏ । ନୂଆଁ ଶବ୍ଦର ଅନ୍ୟ ଏକ ପ୍ରକାର ଅର୍ଥ ସ୍ୱର୍ଣ୍ଣ ମୁଦ୍ରା । ଏହି ପବିତ୍ର ଦିବସରେ ଗୋଟିଏ ରାଜସଭା ବା ଦରବାର ଆହୂତ ହୁଏ । ପାତ୍ର, ମନ୍ତ୍ରୀ, ସେନାପତି, ପ୍ରାଦେଶିକ ଶାସକ, ଦଳାଇ, ଦଳବେହେରା, କବି, ପଣ୍ଡିତ, ରାଜନୀତିଜ୍ଞ ଇତ୍ୟାଦି ବିଶିଷ୍ଟ ନାଗରିକ ଓ ପ୍ରଜାମାନେ ସଭାରେ ଯୋଗ ଦିଅନ୍ତି । ବିବିଧ କଳା, କୃଷି ଓ ପଣ୍ୟଜାତ ଦ୍ରବ୍ୟମାନ ରଜାଙ୍କୁ ଭେଟି, କଳାକାରମାନେ ଉପଯୁକ୍ତ ପୁରସ୍କୃତ ହୁଅନ୍ତି । ଓଡ଼ିଶାରେ ଏ ବିଧି ଓ ଦିବସ ଅବଧି ପ୍ରଚଳିତ । ଏହା ଅଙ୍କଗଣନାରେ ଓଡ଼ିଶାରେ ନୂତନ ବର୍ଷର ପ୍ରଥମ ଦିବସ । ବର୍ଷ-ଶୁଭାଶୁଭ, ସାହିତ୍ୟ, ସଙ୍ଗୀତ, ମଲ୍ଲଯୁଦ୍ଧ ଇତ୍ୟାଦିର ଆଲୋଚନା ଓ ପ୍ରଦର୍ଶନୀ ମଧ୍ୟ ଏଦିନ ହୋଇଥାଏ ।

—ପରସ୍ଥିତ—

ସେହି ଦରବାରର ଅନୁଷ୍ଠାନ । ଉତ୍କଳର ସ୍ୱର୍ଗତ ପୁଣ୍ୟାତ୍ମା କର୍ମ-ଯୋଗୀ, ଓ ଯୋଗଜନ୍ମାମାନଙ୍କ ଉପସ୍ଥିତରେ ଅମିତତେଜା ଚକ୍ରବର୍ତ୍ତୀ ସମ୍ରାଟ ଅନଙ୍ଗଭୀମ ଦେବଙ୍କର ଦରବାର । କେତେକ ବିଶିଷ୍ଟ ଅତିଥି ଆମନ୍ତ୍ରିତ । ସଭାସ୍ଥଳରେ ମହାମନ୍ତ୍ରୀ ସେମାନଙ୍କର ବିଶେଷ ପରିଚୟ ଜ୍ଞାପନ କରୁଅଛନ୍ତି । ସ୍ୱୟଂ ଗଜପତି ମହାରାଜ ତାଙ୍କର ପ୍ରିୟ ଓଡ଼ିଶାର ଭବିଷ୍ୟତ ଜାଣିବାକୁ ଉତ୍କଣ୍ଠିତ ।

ବ୍ୟବସ୍ଥାପନା

ସ୍ଥାନ—ସୁରପୁର । ଜ୍ୟୋତିର୍ମଣ୍ଡଳ ମଣ୍ଡିତ ଅପୂର୍ବ ରତ୍ନ-ସିଂହାସନରେ ଉପବିଷ୍ଟ ଗଜପତି ମହାରାଜ ଶ୍ରୀ ଶ୍ରୀ ଶ୍ରୀ ଅନଙ୍ଗଭୀମ ଦେବ । ଅନ୍ୟାନ୍ୟ ବିଶିଷ୍ଟ ମନୀଷୀବୃନ୍ଦ ଯଥାସ୍ଥାନରେ ଉପବିଷ୍ଟ । ମହାମନ୍ତ୍ରୀ କୁଳବୃଦ୍ଧ ମଧୁସୂଦନ, ନିମନ୍ତ୍ରିତ ବିଶିଷ୍ଟ ଆଗନ୍ତୁକମାନଙ୍କର ପରିଚୟ ପ୍ରଦାନ କରୁଛନ୍ତି । ପ୍ରବେଶ କଲେ—ମହାମହୋପାଧ୍ୟାୟ ସାମନ୍ତ ଚନ୍ଦ୍ରଶେଖର—

ସୁରପୁର—

ସମାବେଶେ ହେ ସୁମନୀଆଁ ପାଳନ,
ସମବେତ ଯେତେ ଥିଲେ ଉତ୍କଳ-ନନ୍ଦନ ।

ଦରବାର—

ମଣ୍ଡିଛନ୍ତି ଉତ୍କଳ-କେଶରୀ,
ସମ୍ରାଟ ଅନଙ୍ଗଭୀମ ଦିଗ୍‌ବିଜୟ ସାରି ।

ରାଜବଧୂ—

ମନ୍ତ୍ରୀପଣେ ଶ୍ରୀ ମଧୁସୂଦନ,
ଆଗନ୍ତୁକେ ଚିହ୍ନାଇଲେ କରି ଜଣ ଜଣ ।

"ମହାରାଜ !

ଏ ଆପଣ ପଠାଣି ସାମନ୍ତ,
ପୃଥିବୀରେ ଶୁଭ ନାମ ଅଦ୍ୟାପି ଜୀବନ୍ତ ।
ଗ୍ରହ ମଣ୍ଡଳରେ ସଦା ଏହାଙ୍କର ବାସ,
ଆସିଛନ୍ତି ଭେଟିବାକୁ ଶ୍ରୀଙ୍କମୁ ସକାଶ ।
ଆଗଙ୍ଗ ବିସ୍ତୃତ ଭୂମି ଗୋଦାବରୀ ଯାଏ,
ଯାହାଙ୍କ ଛବି ତଳରେ ଉତ୍କଳ ବୋଲାଏ ।
ସେହି ସେ ଆପଣ, ତେଣୁ ଙ୍କମୁ ଦରଶନ,
ସୌଭାଗ୍ୟ ଘଟାଇଛି ସୁନାଆଁ ମିଳନ ।
ଚନ୍ଦ୍ରଶେଖର ସାକ୍ଷାତେ ଏ ଚନ୍ଦ୍ରଶେଖର,
ଯୋଗସିଦ୍ଧ ପୁରୁଷ ଏ ନଶ୍ୱର ଈଶ୍ୱର ।
ବାଉଁଶ ନଳୀରେ ସୌର ମଣ୍ଡଳ ରଖନ୍ତି,
ଲୋକେ ତ ନାହାନ୍ତି ଧନେ ହେଲେ ଯନ୍ତ୍ରପାତି ।
ଦୁଃଖ-ଝଡ଼ା ଉଆସରେ ପାନ ଖଣ କରି;
ଦିନ ଗଲା, ନ ଘେନିଛି ଉତ୍କଳ ଅଦରି ।
ଏହିପରି ଏହାଙ୍କ ଅଙ୍କେ ପଞ୍ଜିକା ଗଣନ,
ଆଜି ତ ଏହାଙ୍କ ମତେ ସୁନାଆଁ ପାଳନ ।
ଲକ୍ଷ୍ୟ କରିଥିଲେ ଗ୍ରହସ୍ଥିତି ଗଗନରେ,
ଦେଖନ୍ତି କାଠିରେ ମାପି, ଅଙ୍କ କଳଶରେ ।

ସିଦ୍ଧାନ୍ତ ଦର୍ପଣ କର୍ତ୍ତା ଏହି ମହାଜନ,
ସୌର ଲୋକେ ଆଜି ଆସି କରନ୍ତି ବିଶ୍ରାମ ।

"ଆସନ୍ତୁ ମନୀଷୀ !"
ମହାରାଜ, ହସହସ,
ସମାଦରେ ଦେଲେ ବସାଇଲେ ନିଜ ପାଶ ।
ଆପଣା ଭୂମିରେ ଗୁରୁ-ଗୌରବ ନ ଥାଏ,
ଦୂର ପର-ଦେଶେ ସିନା ବିଜ୍ଞ ପୂଜା ପାଏ ।
ପର ପୂଜା ଶିଖିବାକୁ ବାକି ଅଛି କାଳ,
ଆଜି ମଧ୍ୟ ବହୁ ପଛେ ପଡ଼ିଛି ଉତ୍କଳ ।"
ମଧୁସୂଦନଙ୍କ ଆଡ଼େ ଫେରାଇ ନୟନ,
ସାମନ୍ତରେ ମହାରାଜ କହିଲେ ଏସନ :—

ମଧୁବାବୁ—

ଜାଣିଥିବେ ଏହାଙ୍କୁ ଆପଣ,
ଆଜି ଯା ଭାରତେ ଘଟେ ଅପୂର୍ବ ଘଟଣା,
ଉଦ୍ଭାବନ କରିଥିଲା ଏହାଙ୍କ କଳ୍ପନା,
ରୂପରେଖ ଦେଇଅଛି ଦାସଙ୍କ ସୂଚନା ।
ଗଢ଼ିଥିଲ ଯେ ଉତ୍କଳ ନିଜ ବାହୁ ବଳେ,
ଖଣ୍ଡ ଖଣ୍ଡ ଏବେ ଦେଖ କାଳର କବଳେ ।
ଏଇ ମଧୁବାବୁ ! ମୂର୍ତ୍ତି ଶକ୍ତି ଯୋଡ଼ ପାଇଁ,
ଡାକି ଡାକି ଦେଇଛନ୍ତି ଦହକ ଗମାଇଁ ।
ଅର୍ଜିଛନ୍ତି ବହୁଧନ, କଙ୍ଗାଳ ଶେଷରେ,
ଗଙ୍ଗା କୂଳେ ଥାଇ ଦିନ ଯାଉଛି ଶୋଷରେ ।

ଏଇ ମଧୁବାବୁ ! ଜାତି ଯାହାଙ୍କ ଧିଅନ,
ଉତ୍କଳରେ ସମ୍ମିଳନୀ ଯାହାଙ୍କ ଭିଆଣ ।
“ଜାଳି ଜାତି ପ୍ରେମ-ବହ୍ନି ସ୍ୱାର୍ଥ ଅହୁତରେ”
ଯଜ୍ଞ ରଚିଥିଲେ ପରା ଉତ୍କଳ ଘୃତରେ ।
“ଅଲୋ ସଖି ! ରଖ ଆପେ ଆପଣା ମହତ ।”
ସମ୍ମାନ ରକ୍ଷଣେ କହୁଥିଲେ ଯେ ସତତ ।
ଏଇ ସେଇ ମଧୁବାବୁ, ଜାଣିଥିବେ ତାଙ୍କୁ,
ଚିହ୍ନାଇ ଦେବାକୁ ଆଉ ଅଛି କି ଏହାଙ୍କୁ ?
ଯାହା ନିର୍ଦ୍ଦେଶରେ ଆଜ ସ୍ୱାଧୀନ ଭାରତ,
ଆସିଛନ୍ତି ସେ ତ, ଏବେ ତାଙ୍କୁ ଚିହ୍ନିର ତ
ଜନ-ଜାଗରଣୀକାରୀ ନୁହନ୍ତି କି ମଧୁ,
ନୁହନ୍ତି କି ଚିରକାଳ ଦୀନଜନ ବନ୍ଧୁ ?
ଛନ୍ଦହୀନ ପଦତ୍ୟକ୍ତ ମୋର ସିଂହାସନ,
ଏହି ତ ସେ ମଧୁବାବୁ ରଖିଲେ ସମ୍ମାନ !
ଏହି ତ ଶିଖାଇ ଥିଲେ ‘ମସ୍ତକ ଅଙ୍ଗୁଳି,’
ଉର୍ବର କରଇ ଦେଶ ଏକ ସଙ୍ଗେ ମିଳି ।
କଳାର ସଂସ୍କୃତ ତୁଲେ ସ୍ୱାଧୀନ ଭାବନା,
ସଂଯୋଗ କଳ୍ପନା କଲେ ଏହି ମହାମନା ।
ଯୁଗର ଜନତା ପାରି ନ ଥିଲା ଆଦରି
ଭିତରର ଥିଲା ଚିନ୍ତା, ବୁଝି ଭାବ [illegible] ।
ଅନ୍ତକାଳେ ବିଭୁପଦ ସ୍ମରି ବଦନେ,
“ମୋ ଓଡ଼ିଶା ମାଆ” ବୋଲି ମୁଖରୁ ବାହାରେ
ଘଡ଼ି ଘଡ଼ି ଦେଉଥିବା ଉପଦେଶ ମାନ,
ଚିହ୍ନିଲ କି କେହି ତାଙ୍କୁ ? ପାଳିଲ କି ଜନ ?

'ପୂଜ ଶିଖି ନାହିଁ ନିଜ ଜନନୀ ପୟର,
ସେ କାହୁଁ ଜାଣିବ ଜନ୍ମ ମାଟିର ଆଦର ?'
ଏ ତ ସେହି ମଧୁବାବୁ କହୁଥିଲେ ପଦେ,
ଭକ୍ତି-ଝିଆ ମନ୍ତ୍ରୀପଣି ଚିହ୍ନି ଦେଇ ପଦେ ।
ଆସି ଏବେ ବିଶ୍ରାମରେ ମୋର ମନ୍ତ୍ରୀ ପଣି—
ବରିଛନ୍ତି ସ୍ୱଇଚ୍ଛାରେ ଶ୍ରୀମଧୁ ସୂଦନ
କିଅବା ନାହାନ୍ତି ଜାଣି ସାମନ୍ତ ଅପଣେ ?
କହିଗଲି ବହୁତ ମୁଁ ପ୍ରଗଲଭ ପଣେ ।

"ମହାରାଜ !"
ଉତ୍ତରିଲେ ପୁଣି ମଧୁ ଦାସେ
"କଣ ଅଛି ଯାହା ମୋର କର୍ତ୍ତବ୍ୟ ପଣ ସେ ?
ଭଲେ ହେଲେ ଗୁଣୀ, ଦଶେ ଭଲ ପରକାର,
ଏ ଅଟେ ଲକ୍ଷଣ,—ଗୁଣୀ, ଗୁଣ ଗ୍ରାହକର ।
ତେଣୁ ସିନା ତୁମ୍ଭ ଯଶ ଗାଏ ନିତ ତୁଣ୍ଡେ;
ତୁମ୍ଭ-ପଦେ ତୁଏଁ ତୁଏଁ ନଇଁଯାଏ ମୁଣ୍ଡେ ?
ମୋ ତହୁଁ ଅଧିକେ ଦାନକରିଛନ୍ତି ଜନ'
ରକ୍ତବିନ୍ଦୁ ଢାଳି ରଖିଛନ୍ତି ମାଆ ମାନ ।
ବରିଛନ୍ତି ବୀର ବନ୍ଦୀଶାଳା ବାର ବାର,
ଦୁଃଖୀ ଲଗି ଢାଳିଛନ୍ତି ନୟନରୁ ଧାର ।
ଜାଗର ଯାମିନୀ କେତେ ପାହିଛନ୍ତି ଜୀବନେ,
ସ୍ୱର୍ଗ-ଦେଶ ଦେଖିଛନ୍ତି ସ୍ୱପନ-ନୟନେ ।
'ସ୍ୱାର୍ଥ' ବୋଲି ପଦ ଯାର ନ ଥିଲଟି ମନେ
ଏହି ସେ ଆସନ୍ତି 'ଦାସେ' ତୁମ୍ଭୁଁ ଦରଶନେ ।"

ସାମନ୍ତ କହିଲେ :—
"ଓହୋ ! ଚିହ୍ନିଛି, ଚିହ୍ନିଛି,
ଗଣନାରେ ଏହାଙ୍କର କୋଷ୍ଠୀ ମୁଁ ଦେଖିଛି ।
ଡାକନାମ 'ଗୋପବନ୍ଧୁ', କିନ୍ତୁ ମୁଁ ତ ଜାଣେ,
'ଦୀନ-ବନ୍ଧୁ' ବୋଲି ତାଙ୍କୁ ଜାତକ ପ୍ରମାଣେ ।
ବାଲ୍ୟରୁ ତାଙ୍କୁ ଚେଇଁଗଲେ ଜନ୍ମ-ଦାତ୍ରୀ,
ଚିହ୍ନିଥିଲେ ଦାସେ ଜନ୍ମ-ମାଟି,—ଜୀବଧାତ୍ରୀ ।"

"ଆସନ୍ତୁ,
ବସନ୍ତୁ ଦାସେ ! ଉତ୍କଳର ମଣି,
ଘେନନ୍ତୁ ପ୍ରଣାମ" ବୋଲି ମହାରାଜ ଭଣି—
ନିର୍ଦ୍ଦେଶିଲେ ମନ୍ତ୍ରୀବରେ ଦେବାକୁ ଆସନ,
ଗୋପବନ୍ଧୁ ଦାସେ କଲେ ମଧୁଙ୍କୁ ସମ୍ମାନ ।
"ବସ, ବସ ବାବୁ ! ବହୁଦିନୁ ଦେଖିନାହିଁ"
କହି ମଧୁ ବାବୁ ଦେଲେ ଆସନେ ବସାଇ ।
"ବାକିଥିଲା ବହୁ କାର୍ଯ୍ୟ ଆସିଥିଲି ଚାଲି,
ତୁମ୍ଭେ ଅଛ ବୋଲି ସିନା ନିଶ୍ଚିନ୍ତରେ ଖାଲି ।
ଲୁଣ ଲାଗି, ପାଣି ଲାଗି, ଲଢ଼ିଛ ବହୁତ,
ଦେଖିଲି ମୁଁ ଉତ୍କଳରେ ତୁମ୍ଭେ ବୀର ସୁତ ।
ଦୂରୁ ଦେଖେଁ, ଆନନ୍ଦରେ ହୁଏଁ ଆତ୍ମହରା,
ଢାଳୁଥାଏଁ ଶିରେ ଆଶୀର୍ବାଦ ମନଭରା ।
ତୁମ୍ଭଙ୍କୁ ମୁଁ ଯେତେବେଳେ ଦେଖିଦିଏଁ ଦାସେ,—
ରଣଚଣ୍ଡୀ ମୂର୍ତ୍ତି ଧରି ନଦୀ, ବର୍ଷା-ମାସେ,
ଭଉଁରୀ ଲହରୀ ଘେନି ଦୁଇ କୂଳ ଲଙ୍ଘି,
ପ୍ରଚଣ୍ଡ-ତାଣ୍ଡବ ଲୀଳା ରଚଇ ମାତଙ୍ଗୀ,

ବଢ଼ାଏ ହୃଦରେ ଘନ ଡମ୍ବରୁ ଚଡ଼କ
ପ୍ରଭଞ୍ଜନ ଘୂର୍ଣ୍ଣୀ ଯେବେ ଦିଅଇ ଧମକ ।
ଚମକି ଚପଳା ଦେଖୁଥାଏ ବଶୁ-ବେଶ,
ଶେଷ ମାଳ ଥାଏଁ ମେଲି ମୁକୁଳିତ କେଶ ।
ଚମକିତ ବିସ୍ମିତ କମ୍ପେ ଥର ଥର,
ଦେଖିଛି ତୁମ୍ଭଙ୍କୁ—ଚଳେ ନ ଥାଏ ଖାତର ।
ଅଟଳ ଅକୂଳେ ମେଲି ଦେଉଥାଅ ନାଆ,
ବନ୍ୟା-ପ୍ରପୀଡ଼ିତ ଜନେ ହେବ ବୋଲି ସାହା ।
ଦେଶର ଜାତିର ତୁମ୍ଭେ ଗୌରବ କେତନ,
ଅର୍ଜିଥିଲ ଜୀବନରେ ଯେତେ ଯାହା ଧନ,—
ଦେଇଛ ଅର୍ପିଛ ସବୁ ଜନ-ସେବାପାଇଁ,
ଯିବା ଆସିବାରେ ତୁଚ୍ଛ ହାତ ଦୋହଲାଇ ।”
“ଏ ଗୌରବ ନୁହେଁ ମୋର ହେ ମଧୁସୂଦନ !
ଜୀବନେ କରିଛି ମାତ୍ର ନିର୍ଦ୍ଦେଶ ପାଳନ ।
ତୁମ୍ଭେ ଦିନା ଗୁରୁ, ଅନ୍ଧ-ନୟନ-ଅଞ୍ଜନ,”
କହନ୍ତି ବିନୟେ, ଦାସେ’’ ସବୁ ତୁମ୍ଭ ଦାନ ।
ଦେଇଛି ପ୍ରେରଣା, ତୁମ୍ଭେ ଉତ୍କଳର ପିତା,
ତୁମ୍ଭ ପଦଧୂଳି କରି ମସ୍ତକର ଟୀକା—
ଆଜି ଉତ୍କଳୀଏ ଦୂର ଦେଶେ ଗଣ୍ୟ ମାନ୍ୟ,
କୋଳରେ ତୁମ୍ଭଙ୍କୁ ଧରି ମାତୃଭୂମି ଧନ୍ୟ ।
ସେବାବ୍ରତ ତୁଲେ ଶୁଦ୍ଧ ରାଜନୀତି ଶିକ୍ଷା,
ଉତ୍କଳେ ଦେଇଁଛି ଯାହା ସେ ତ ତୁମ୍ଭ ଦୀକ୍ଷା ।”
ଫୁଟିଗଲା ମଧୁ ମୁଖେ ସନ୍ତୋଷର ହାସ,
କହିଲେ, “ପ୍ରଶଂସା କେତେ ଗାଅ ? ଦାସେ ବସ ।

ବୟୋବୃଦ୍ଧ ବୋଲି ଅବା କହୁଥିବ କିଛି,
ସେଥିକି ପ୍ରଶଂସା ମୋର କର ବସି ? ଛି, ଛି,
ନିଜ ନିଷ୍ଠାବଳେ ତୁମ୍ଭେ ନିଜେ ମହୀୟାନ,
ଉପଦେଶ ଯାହା ମୋର ସେ ଅତି ନଗଣ୍ୟ ।
ଉଜ୍ଜ୍ୱଳ ନୟନେ ବିଶ୍ୱ ଦିଶଇ ଆଲୋକ,
ପକ୍ଷ ପାଇ ପକ୍ଷୀ ବୋଲି ମଣେ ଝଡ଼ପୋକ !
ଏଣେ ଦେଖ, ଏଣେ ଦେଖ, କିଏ ସେ ଆସନ୍ତି,
କର୍ମମୟ ଦିବ୍ୟତେଜେ ଝଟକଇ କାନ୍ତି ।

ମହାରାଜ !

ଏ ଆପଣ ଗଉଡ଼ ଶଙ୍କର,
ତୋଳିଛନ୍ତି ଭାଷା-ରାଜ୍ୟ ଗଉଡ଼-ଶଙ୍କର ।
ବଙ୍ଗୀୟ ଓଡ଼ିଶା ତଳେ ଭୁଲି ନିଜ ଢଙ୍ଗ,
ହୋଇଥାନ୍ତା କଳାମୟୀ ଉତ୍କଳ ବିଭଙ୍ଗ ।
ଓଡ଼ିଆ ମାଆର ପୂଜା କରୁଥାନ୍ତେ ପୁଏ
ବଙ୍ଗଳା ସ୍ତବରେ—ଏ ତ ଅଳ୍ପ କଥା ନୁହେ ।
ଏହି ତ ଭିଡ଼ିଲେ ଅଣ୍ଟା ବାହାରିଲେ ଆଗ,
ଛୁଇଁ ନ ପାରିଲେ କେହି ଜନନୀର ଅଙ୍ଗ ।
ଓଡ଼ିଆ ରହନ୍ତି ତାଙ୍କ ଲଣାର ଲଗୁଆ,
ମୁଦ୍ରାଯନ୍ତ୍ର ପ୍ରଚଳନେ ସେ ପରା ଆଗୁଆ ?
'ପ୍ରାଚୀନ ସାହିତ୍ୟ ସିନା ପୈତୃକ ସମ୍ପତ୍ତି
ରକ୍ଷଣ ବର୍ଦ୍ଧନ କରେ ସୁଯୋଗ୍ୟ ସନ୍ତତି ।'
କହୁଥିଲେ ନିତି, ପୁଣି କରିଥିଲେ କର୍ମେ,
ଅଜସ୍ର ଅଜାଡ଼ିଛନ୍ତି ଧନ, ଦାନ ଧର୍ମେ ।

ରଖିଛନ୍ତି କାଠଭକ୍ତ ପୋଥିର ଗୌରବ
'ଦୀପିକା'ରେ ପ୍ରକାଶିଲେ ଜନ-ମନ-ଭାବ ।

ନାଟ୍ୟ'କ ଲେଖକ, କବି, ସଂଗୀତ-ରସିକ,
ନମସ୍ତେ ହେ ଗୁରୁଦେବ ! ସ୍ୱଦେଶ ପ୍ରେମିକ ।"

ମଧୁଙ୍କ ମୁଖରୁ ଶୁଣି ଅଜସ୍ର ପ୍ରଶଂସା,
କହିଲେ ଗୌରୀଶଙ୍କର ଦେଇ ଦରହସା—

"ମଧୁ ! ମନେ ରଖି ଅଛ, ତୁମ୍ଭେ ମୋର ସ୍ଥାନ ?
କିବା ଶିକ୍ଷା ଦେଇଥିଲି ? ଦିନ ପାଞ୍ଚ ମାନ !

ଏହି ଭକ୍ତି, ଏ ନମ୍ରତା, ଏ ବିନୟ ମନ୍ତ୍ରେ,
ବଜାଇଛ ବୀଣା ଉତ୍କଳୀର ମର୍ମ ଯନ୍ତ୍ରେ ।"

ଗଜପତି ହସି ହସି କହିଲେ ଏମନ୍ତ,
"ଗୁରୁ-ଶିଷ୍ୟ ସମ୍ବାଦ ତ ବଡ଼ ପ୍ରାଣବନ୍ତ !

ଗୁରୁ ଗୁଣେ ଗୁରୁ, ଶିଷ୍ୟ ଗୁଣେ ଶିଷ୍ୟ ବଡ଼,
ଯେ ଯାହା ବଳରେ ଜିଣି ଅଛି ତ ଗଡ଼ ।"

ସାମନ୍ତ କହିଲେ, 'ବେନି କୋଷ୍ଠୀ ଫଳାଫଳ
କର୍ମୀ, ଯୋଗୀ ମଧ୍ୟେ ସାନ ବଡ଼ କେ ବିଚାର ।'

ତହିଁ ପୁଣି ବସିଛନ୍ତି ତ୍ୟାଗୀ ପଣେ ଦାସେ,
ଅଧିକ ଉଣା କାହାକୁ ନ ଆସେ ମାନସେ ।

ମୀମାଂସା ପୂରଣ ଛାଡ଼ ଭବିଷ୍ୟତ ହସ୍ତେ
ବଂଶଧରୁ ବିଚାରନ୍ତୁ କେ ଅବା କେମନ୍ତେ ।

ଜାଣିବାକୁ ଏ ମିଳନେ ସ୍ଥାନ ଅଭିପ୍ରାୟ,
ଅପେକ୍ଷାରେ ବସିଛନ୍ତି ପଣ୍ଡିତ ସୁଧୀଚୟ !"

"ହେ ସାମନ୍ତ !

ଗ୍ରହସଜ୍ଜ୍ୟ କରନ୍ତୁ ନିବାସ,
ଉତ୍କଣ୍ଠିତ ଚିତ୍ତ ମୋର କରିଅଛି ଆଶ ।
ବହୁ ଯତ୍ନେ ପୁଣି ସ୍ୱାଧୀନତା ପାଇ ଦେଶ
ସ୍ୱପ୍ନ ହୋଇଅଛି ସତ୍ୟ, ଦ୍ୱିଧା ନାହିଁ ଲେଶ ।
କରିଥିଲି ଯେ ଭୂମିରେ ଅଙ୍କୁର ରୋପଣ
ସେ ଉତ୍କଳ ଭବିଷ୍ୟତ ଜାଣିବାକୁ ମନ ।
ଜଗତ ବିଦିତ ଜ୍ୟୋତିର୍ବିଦ ତ ଆପଣ,
ଗଣନା କରି କହନ୍ତୁ ଶୁଭାଶୁଭମାନ ।
ବସିଛନ୍ତି ଉତ୍କଳର ସେବକ ସନ୍ତାନ,
ଶୁଣିବେ ସମସ୍ତେ" ନୃପ କହିଲେ ଏସନ ।

"ମହାରାଜ !

ଦିଶୁଅଛି ଯାହା ଭବିଷ୍ୟତ ।"
ସାମନ୍ତେ କହିଲେ "ଠିକେ କରୁଛି ବ୍ୟକତ
ଉତ୍କଳ ଲୋଡୁଛି ପୁଣି ଯୋଗୀର ସାଧନ
ଲଭିବାକୁ ପୂର୍ବ ଯଶ ପୁରାଣ-ସମ୍ମାନ ।
ହେ ଅନଙ୍ଗଭୀମ ! ଛତ୍ରପତି ମହାବଳ !
ପାଶୋରି ନ ଦିଅ ମନୁ ଗ୍ରହୁଙ୍କ ଉତ୍କଳ !
ସେ ଉତ୍ସାହ ଉନ୍ମାଦନା ଭରିଦିଅ ମୁଣ୍ଡେ
ଉତ୍କଳର ଯଶୋଗୀତ ଫୁଟୁ ତୁଣ୍ଡେ ତୁଣ୍ଡେ ।
ଦିଶୁଅଛି ଯାହା ଭବିଷ୍ୟତ, ବର୍ତ୍ତମାନ,
ଶୁଣନ୍ତୁ ଶୀଘ୍ରମୁ, ଆଉ ସଭାସଦ ଗଣ ।
ସ୍ୱାଧୀନ ସନ୍ତାନେ ଏବେ ଢାଳି ମନପ୍ରାଣ
ମାତୃ-ଭୂମି ଉତ୍କର୍ଷରେ ଦେଲେଣି ଧିଆନ ।

ହେବ ବଂଶବୃଦ୍ଧି, ଯୋଡ଼ା ହେବ ଅନ୍ନ ବସ୍ତ୍ର
କର୍ମ୍ମୀରେ ଅଗଭର କରେ ନେବେ ଅସ୍ତ୍ର ।
ଯୋଡ଼ା ହେବ କୃଷି, ଶିଳ୍ପ, ବାଣିଜ୍ୟ ବ୍ୟବସ୍ଥା,
କହୁଅଛୁ ଭବିଷ୍ୟତ ଦିଶୁଛି ସେ ସଂସ୍ଥା ।
ବାପୀ, କୂପ, ତଡ଼ାଗରେ ଦେଶ ଯିବ ଭରି,
ନ ରହିବେ ଦେଶେ କେହି ଅକର୍ମ୍ମଣ୍ୟ ସରି ।
ଚେତି ଅଛି ଏବେ ଜାତି, ନୀତି-ସଂଗଠନ
ଯୋଡ଼ିଲେଣି ଜନେ ପୂର୍ବ ଶିକ୍ଷା-ପୀଠମାନ ।
ଭଗ୍ନ, ଅସମର୍ଥ ଲାଗି ଆଶ୍ରୟ ଭବନ,
ଠାବେ ଠାବେ ରଚି ଦେବ ଜନତାର ଧନ ।
ଉତ୍ତର ପଶ୍ଚିମ ଦିଗେ ଜଳର ଭଣ୍ଡାର
ଅଚିରେ ହୋଇବ ସାହା ଧନ ସଂପଦର ।
ମହାନଦୀ ବକ୍ଷେ,—ସ୍ରୋତେ ଦିଶେ ଜଳ ଜଳ
କୃଷି ଲାଗି ଅନାଟନ ନ ହୋଇବ ଜଳ ।
ସୁଜଳା, ସୁଫଳା, ଶ୍ୟାମା ହେବ ଏ ଉତ୍କଳ
ଦେଖିବ ଜଗତ—ଚିର ଉଜ୍ଜଳ ସୁନ୍ଦର ।
କୁଟୀରେ କୁଟୀରଶିଳ୍ପ ହେବ ଉଦ୍‌ବୋଧନ
ପର ଦେଶେ ଯିବ ନାହିଁ ଭାସି ଘରଧନ ।
ଚତୁର୍ଦ୍ଦିଗେ ଭରିଯିବ ଶିଳ୍ପ-ପ୍ରତିଷ୍ଠାନ,
ସାରା ଦେଶ ପ୍ରତେ ହେବ ଜାଗ୍ରତ ସମାନ ।
ଭେଦଭାବ ଭୁଲି ମନୁ ଶାନ୍ତି ନୀତି ଧରି
ଅଶୋକ ମନ୍ତ୍ରରେ ଜନେ ନେବେ କାଲ ହରି ।
ମଧୁ, ଗୋପବନ୍ଧୁ ଆଶା ସଫଳ ହୋଇବ,
ନବ ଭାନୁ ନଭପଟେ ଅଚିରେ ଉଇଁବ ।

ଦେଶ ମୋଟେ ଉତ୍କଳର ଭବିଷ୍ୟ ଉଜ୍ଜ୍ୱଳ,
ସୁର ପୁରୁଁ ଢାଳ ସବେ ଅଶୀର୍ବାଦ ଜଳ ।
ଅନ୍ତେ ପଦେ ଶ୍ରୀଛାମୁରେ ମୋର ନିବେଦନ
କରିଥିଲେ ଶ୍ରୀମନ୍ଦିର ଗଢ଼ା ସଂପୂରଣ,
ପୁଣି ଶ୍ରୀମନ୍ଦିର ଚୂଳେ ଉଡୁ ଜୟ-ବାନା,
ପୁଣି କହୁ "ପତିତ ରେ ! ନାହିଁ ତୋ ଭାବନା"।
ଦେଖୁ ବିଶ୍ୱ ଏଥି ସର୍ବ ଧର୍ମ୍ମ ସମନ୍ୱୟ
ଉତ୍କଳର ଯଶ କୀର୍ତ୍ତି ରହିବ ଅକ୍ଷୟ ।
ଶ୍ରୀଛାମୁ ଆଶିଛେ ଦେଶେ ବଳି ଯିବ ଭରି
ଅନାନ୍ତୁ ଉତ୍କଳେ ଆଉ ଥରେ ଦୟା କରି ।
କର ଆଶୀର୍ବାଦ ଛାମୁ ହେ ଅନଙ୍ଗଭୀମ !
ଧନେ, ଜନେ, ମାନେ ହେଉ ଉତ୍କଳୀ ଅସୀମ ।
କଳା-ମଞ୍ଜୁଷା ଏ ଦେଶ ହେବ ଶୋଭାମୟ
କଣ୍ଠେ କଣ୍ଠେ ଭରିଯିବ ଉତ୍କଳର ଜୟ ।"

---

(ସଭାସଦ ବର୍ଗ ସାମନ୍ତଙ୍କୁ ସାଧୁବାଦ ଜ୍ଞାପନ କଲେ, ଅଜସ୍ର କରତାଳି ନାଦରେ ସଭାସ୍ଥଳୀ ଉଚ୍ଛୁଳି ଉଠିଲା—ସଭା ଭଙ୍ଗ ହେଲା)

ସମ୍ପୂର୍ଣ୍ଣ

# ସଙ୍କେତ

୧ । ଚନ୍ଦ୍ରିକା—

ବନ୍ଦୀ ଭାରତର ପରାଧୀନତା-ଅନ୍ଧକାର ଦୂର କରିଛନ୍ତି ପୂଜନୀୟ 'ବାପୁଜୀ'—ଚନ୍ଦ୍ରିକାର ବିକାଶରେ ଯେପରି ଅମାନ୍ଧକାର ଅପସାରିତ ହୁଏ । କବିତାଟି ମହାମାନବ ଗାନ୍ଧିଜୀଙ୍କ ଉଦ୍ଦେଶ୍ୟରେ ।

୨ । ସାରଥି—

ମହାଭାରତ ଯୁଦ୍ଧାରମ୍ଭ ପୂର୍ବେ କୁରୁ ଓ ପାଣ୍ଡବପକ୍ଷ ଶ୍ରୀକୃଷ୍ଣଙ୍କର ସାହାଯ୍ୟପ୍ରାର୍ଥୀ ହୋଇଥିଲେ । ଦର୍ପାନ୍ଧ ଦୁର୍ଯ୍ୟୋଧନ କ୍ଷମତା, ଐଶ୍ୱର୍ଯ୍ୟ ଓ ରାଜତ୍ୱ ଗର୍ବରେ ଶ୍ରୀକୃଷ୍ଣଙ୍କ ଶିରୋଦେଶରେ ଏବଂ ଅନନ୍ୟ ଭକ୍ତ ଅର୍ଜୁନ ପଦତଳେ ଆଉ ଯଥାକ୍ରମେ ଶ୍ରୀକୃଷ୍ଣଙ୍କର ସେନାବାହିନୀ ଓ ସ୍ୱୟଂ ଶ୍ରୀକୃଷ୍ଣଙ୍କୁ ନିଜ ନିଜ ପକ୍ଷ ଲାଗି ପାଇଥିଲେ । ଅର୍ଜୁନ ସୃଷ୍ଟିକର୍ତ୍ତାଙ୍କୁ ଗ୍ରହଣ କଲାବେଳେ ଦୁର୍ଯ୍ୟୋଧନ ସୃଷ୍ଟିକୁ ମାତ୍ର ଆଦର କରି ନେଇଛନ୍ତି । ରଚନାଟିର ଏହି ହେଲା ବିଷୟବସ୍ତୁ ।

୩ । ଶିରଦାନ—

ଖୋରଧା ପାଇକ-ବିଦ୍ରୋହର ପରବର୍ତ୍ତୀ ଘଟଣା । ବିଦେଶୀ ଶାସକର ପ୍ରବଳ ଦଳନ, ଶୋଷଣ ଓ ନିର୍ଯ୍ୟାତନ ପରେ ମଧ୍ୟ ଉତ୍କଳର ବୀରତ୍ୱ ଓ ମହତ୍ତ୍ୱ ପ୍ରଦୀପ ଲିଭି ଯାଇ ନ ଥିଲା । ମାଣିକୀ ଦଳବେହେରା ତାହାର ପ୍ରତୀକ । କବିତାଟି ତାଙ୍କର ଯଶ ସ୍ମରଣରେ ।

୪ । ଦିଗ୍‌ବିଜୟ—

ସ୍ୱାଧୀନ ଉତ୍କଳରେ ଗଙ୍ଗ ବଂଶୀୟ ରାଜାମାନଙ୍କ ରାଜତ୍ୱ କାଳର ଗୋଟିଏ ଘଟଣା । ସେତେବେଳେ ଓଡ଼ିଶାର ରାଜଧାନୀ ଥିଲା ଯାଜପୁର । ମହାରାଜ ଦ୍ୱିତୀୟ ନରସିଂହ ଦେବଙ୍କ ପ୍ରଦତ୍ତ ତାମ୍ରଲିପି ଏହାର ପ୍ରମାଣ ଦିଏ । ରୟାଲ୍ ଏସିଆଟିକ୍ ସୋସାଇଟି ଅଫ୍ ବେଙ୍ଗଲର ପୁରାତନ ପ୍ରକାଶନ, ପ୍ରଥମ ଖଣ୍ଡ ପୃ ୨୬୨ ଦ୍ରଷ୍ଟବ୍ୟ ।

୫ । ଅତ ବଡ଼—

ଭାଗବତ ଗ୍ରନ୍ଥକାର ମହାତ୍ମା ଜଗନ୍ନାଥ ଦାସଙ୍କ ମହନୀୟ ଚରିତ । ଦିବାକର ଦାସ ପ୍ରଣୀତ ଜଗନ୍ନାଥ-ଚରିତାମୃତରୁ ବିଷୟବସ୍ତୁ ଗୃହୀତ ।

୬ । ମାଳତୀ—

ମୋର ବାଲ୍ୟଜୀବନ ନରସିଂହ ପୁରରେ ଅତିବାହିତ ହୋଇଥିଲା । ସେଠାରେ ଲୋକ ମୁଖରେ ଆଜ ପ୍ରାୟ ୪୦୦ ବର୍ଷ ତଳର ଏହି ଘଟଣାଟିର ବର୍ଣ୍ଣନା ଶୁଣାଯାଏ । ଉତ୍କଳ ରମଣୀର ଏହା ଗୋଟିଏ ତ୍ୟାଗ, ଧୈର୍ଯ୍ୟ, ବୀରତ୍ୱ ଓ ପତିଭକ୍ତିର ଜ୍ୱଳନ୍ତ ଇତିହାସ ।

'ପରଗଳା'—ନରସିଂହପୁରର ଇଷ୍ଟଦେବୀ ।



